# ଜନସଂଖ୍ୟା ଓ
# ବିକାଶ ଶିକ୍ଷା କାର୍ଯ୍ୟକ୍ରମ
# ନୂତନ ରୂପରେଖ



ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର

ଜନସଂଖ୍ୟା ଓ ବିକାଶ ଶିକ୍ଷା ବିଭାଗ

ଓଡିଶା, ଭୁବନେଶ୍ୱର

# ଜନ ସଂଖ୍ୟା ଓ ବିକାଶ ଶିକ୍ଷା
# କାର୍ଯ୍ୟକ୍ରମ : ନୂତନ ରୂପରେଖ



ଜନସଂଖ୍ୟା ଓ ବିକାଶ ଶିକ୍ଷା ବିଭାଗ

ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା, ଭୁବନେଶ୍ୱର

| | | |
|---|---|---|
| ବହିର ନାମ | | ଜନସଂଖ୍ୟା ଓ ବିକାଶ ଶିକ୍ଷା କାର୍ଯ୍ୟକ୍ରମ : ନୂତନ ରୂପରେଖ |
| ଲେଖା | : | ପ୍ରଫେସର ସତ୍ୟନାରାୟଣ ମହାନ୍ତି<br>ଶ୍ରୀମତୀ ବସନ୍ତଲତା ପଟ୍ଟନାୟକ<br>ଡ଼କ୍ଟର ଦିଗରାଜ ବ୍ରହ୍ମା<br>ଶ୍ରୀ ବୈଷ୍ଣବ ଚରଣ ମହାନ୍ତି<br>ଶ୍ରୀ ମିତ୍ରଭାନୁ ପ୍ରଧାନ |
| ପ୍ରକାଶନ/ସ୍ୱତ୍ୱାଧିକାର | : | ଡ଼କ୍ଟର ବିମଳେନ୍ଦୁ ମହାନ୍ତି, ନିର୍ଦ୍ଦେଶକ, ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା, ଭୁବନେଶ୍ୱର |
| ପ୍ରକାଶନ ସଂଖ୍ୟା | | ଏସ୍.ଆର.ସି./ପି.ଡ଼ି.ଇ-୬/୨୮ |
| ମୁଦ୍ରଣ ସଂଖ୍ୟା | | 3,000 |
| ମୁଦ୍ରଣ | | କେଦାର ପ୍ରିଣ୍ଟିଂ ପ୍ରେସ୍ |

| | | |
|---|---|---|
| Title of the Book | : | **JANA SANKHYA O BIKASH SIKSHA : NUTAN RUPAREKHA** |
| Authors | | Prof. S.N. Mohanty<br>Smt. B. L. Pattnaik<br>Dr. Digaraj Bramha<br>Sri B. C. Mohanty<br>Sri M. Pradhan |
| Publisher | | Dr. Bimalendu Mohanty, Director<br>SRC fof AE, Orissa, Bhubaneswar |
| Publication | | SRC/PDE - 6/98 |
| No. of copies | : | 3,000 |
| Pinted at | | KEDAR PRINTING PRESS |

Published under UNFPA/Govt of India funded project

# ମୁଖବନ୍ଧ

ଆମ ଦେଶ ସ୍ୱାଧୀନ ହେବାପରେ ଆମର ସର୍ବବିଧ ଉନ୍ନତି ହୋଇପାରିଛି ବୋଲି ଆମେ କହି ପାରିବା ସତ; କିନ୍ତୁ ଆଶାନୁରୂପ ଉନ୍ନତି ହୋଇଛି ବୋଲି କହି ପାରିବା ନାହିଁ । ଆମ ଜାତୀୟ ଅର୍ଥନୀତି ଉପରେ ଲଦି ହୋଇ ରହିଥିବା ବର୍ଦ୍ଧିଷ୍ଣୁ ଜନସଂଖ୍ୟାର ବୋଝ ଆମର ସକଳ ବିକାଶକୁ ବ୍ୟାହତ କରୁଛି । ଏ ସମସ୍ୟା ଦିନକୁ ଦିନ ବଢ଼ି ବଢ଼ି ଚାଲିଛି ।

୧୬୫୦ ମସିହାରେ ସାରା ପୃଥିବୀରେ ଯେତେ ଲୋକ ଥିଲେ ବର୍ତ୍ତମାନ ଆମ ଦେଶରେ ତା'ର ଦୁଇଗୁଣ ଲୋକ ଅଛନ୍ତି । ଏହି କ୍ରମବର୍ଦ୍ଧମାନ ଲୋକମାନଙ୍କ ଲାଗି ଖାଦ୍ୟ, ବସ୍ତ୍ର ଓ ବାସଗୃହ ଯୋଗାଇ ଦେବାପାଇଁ ସମ୍ବଳ ଯୋଗାଡ଼ କରିବା କଷ୍ଟକର ହେଉଛି । ଏ ସମସ୍ୟା କେବଳ ଆମ ଦେଶର ନୁହଁ, ଏହା ସବୁ ବିକାଶଶୀଳ ଦେଶର ସମସ୍ୟା, ସମଗ୍ର ବିଶ୍ୱର ସମସ୍ୟା । ତୁଳନାତ୍ମକ ଭାବେ ଆମ ଦେଶରେ ଏ ସମସ୍ୟାଟା ନିଶ୍ଚିତ ଭାବେ ଅଧିକ ।

ଏହି ସମସ୍ୟାର ସମାଧାନ ପାଇଁ 'ଜନସଂଖ୍ୟା ଶିକ୍ଷା'ର ପରିକଳ୍ପନା ଓ ପରିଯୋଜନା । ଏହାର ରୂପରେଖ ପୁଣି ବେଳକୁ ବେଳ ଅଭିଜ୍ଞତାକୁ ଭିତ୍ତିକରି ବଦଳି ଚାଲିଛି । ୧୯୮୬ ମସିହାରେ ଆମ ଦେଶରେ ଜନସଂଖ୍ୟା ଶିକ୍ଷାକୁ ସାକ୍ଷରତା କାର୍ଯ୍ୟକ୍ରମ ସହ ସାମିଲ୍ କରାଗଲା । ଆମ ପାଇଁ ଗର୍ବର କଥା ଯେ ୧୯୮୨ରୁ ଆମ ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ରରେ ଜନସଂଖ୍ୟା ଶିକ୍ଷାର ଏକ ସ୍ୱତନ୍ତ୍ର ପ୍ରକଳ୍ପ କାର୍ଯ୍ୟ କରି ଆସୁଥିଲା ଏବଂ ସାଂପ୍ରତିକ ପରିସ୍ଥିତିରେ ମଧ ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର ଏ କ୍ଷେତ୍ରରେ ଅନ୍ୟତମ ଅଗ୍ରଣୀ ଅନୁଷ୍ଠାନ ଭାବେ କାର୍ଯ୍ୟ କରିଚାଲିଛି ।

ଆନ୍ତର୍ଜାତୀୟ ତଥା ଜାତୀୟ ସ୍ତରରେ ଜନସଂଖ୍ୟା ଶିକ୍ଷା କ୍ଷେତ୍ରରେ ହୋଇଥିବା ପରିବର୍ତ୍ତନ ଓ ଅଗ୍ରଗତିକୁ ବିଚାରକୁ ନେଇ ଜନସଂଖ୍ୟା ଓ ବିକାଶ ଶିକ୍ଷା ଉପବିଭାଗ ତରଫରୁ "ଜନସଂଖ୍ୟା ଓ ବିକାଶ ଶିକ୍ଷା କାର୍ଯ୍ୟକ୍ରମ : ନୂତନ ରୂପରେଖ" ଶୀର୍ଷକ ପୁସ୍ତକ ପ୍ରକାଶନର ପରିକଳ୍ପନା । ଜନସଂଖ୍ୟା ଶିକ୍ଷା ପ୍ରସାରରେ ଏହି ପୁସ୍ତକ ସହାୟକ ହେବ ବୋଲି ମୋର ଦୃଢ଼ ଆଶା ଓ ବିଶ୍ୱାସ ।

ବିମଳେନ୍ଦୁ ମହାନ୍ତି

(ଡକ୍ଟର ବିମଳେନ୍ଦୁ ମହାନ୍ତି)
ନିର୍ଦ୍ଦେଶକ

# ଜନସଂଖ୍ୟା ଓ ବିକାଶ ଶିକ୍ଷା :
# ନୂତନ ଆଭିମୁଖ୍ୟ ଓ କର୍ମଯୋଜନା
## ଏକ ଉପକ୍ରମଣିକା

ପ୍ରଫେସର ସତ୍ୟନାରାୟଣ ମହାନ୍ତି

ସାରା ପୃଥିବୀର ଚିନ୍ତାଶୀଳ ଲୋକେ ଜନ ସଂଖ୍ୟା ଓ ତତ୍ ସହିତ ଜଡିତ ସମସ୍ୟାମାନଙ୍କ ବିଷୟରେ ମୁଣ୍ଡଖେଳାଇ ଆସିଛନ୍ତି । ଏଥିପାଇଁ ନାନାବିଧ ସମାଧାନର ପନ୍ଥା ବାହାର କରାଯାଇଛି, ପୁଣି ପରିସ୍ଥିତି ବଦଳିବା ସଙ୍ଗେ ସଙ୍ଗେ ସମସ୍ୟାର ନୂଆ ରୂପ ଆମ ଆଗକୁ ଆସିଛି । ଗୋଟିଏ କଥା ମୁଣ୍ଡବ୍ୟଥାର କାରଣ ହୋଇଛି ତାହା ହେଉଛି-ଅତି କମ୍ ସମୟରେ ପୃଥିବୀର ଜନସଂଖ୍ୟା ଯେଉଁଠି ପହଁଚିଛି, ଦୀର୍ଘକାଳ ଧରି ମଣିଷ ସୃଷ୍ଟିର ଆରମ୍ଭରୁ ତାହାର ଅଧା, ଚଉଠେ ବା ଆଠ ଭାଗରୁ ଭାଗେ ବି ନଥିଲା । ଯେପରି ଦେଖନ୍ତୁ ପୃଥିବୀର ଜନସଂଖ୍ୟା 100 କୋଟିରୁ 200 କୋଟିରେ ପହଞ୍ଚିବାକୁ 123 ବର୍ଷ ଲାଗିଥିଲା । ତାପର 100 କୋଟି ଲେଖାଏଁ ବଢ଼ିବାକୁ ଯଥାକ୍ରମେ 33, 14 ଓ 13 ବର୍ଷ ମାତ୍ର ଲାଗିଲା । ପରବର୍ତ୍ତୀ 100 କୋଟି ବଢ଼ିବା ପାଇଁ ମୋଟେ 11 ବର୍ଷ ଲାଗିବ ବୋଲି କଳ୍ପନା କରା ଯାଇଛି । ୧୯୮୭ ଜୁଲାଇ 11 ତାରିଖରେ ଯେଉଁ ପିଲାଟି ଜନ୍ମିଲା ତାହା ବିଶ୍ୱ ଜନସଂଖ୍ୟାକୁ 500 କୋଟିରେ ପହଞ୍ଚାଇ ଦେଲା । ଏହିଦିନଟିକୁ ଆମେ ବିଶ୍ୱ ଜନସଂଖ୍ୟା ଦିବସ ହିସାବରେ ପାଳନ କରୁଛୁ ଏବଂ 600 କୋଟି ଜନ ସଂଖ୍ୟାରେ ପୃଥିବୀ ପହଞ୍ଚିଛି ୧୯୯୪ ମସିହାରେ । ଏହା ପର ଦଶବର୍ଷରେ ଜନ

ସଂଖ୍ୟା ବୃଦ୍ଧି ହେବ ପ୍ରାୟ ୨ କୋଟି 70 ଲକ୍ଷ । ଏହାର ଅଧାଅଧି ଘଟିବ ଆଫ୍ରିକା ଓ ଦକ୍ଷିଣ ଏସିଆରେ । ଆମ ଦେଶର ଲୋକ ସଂଖ୍ୟା ପାଖାପାଖି 100 କୋଟି ହେବାକୁ ଯାଉଛି ।

ପୃଥିବୀର ସମସ୍ତ ସମ୍ବଳ ସୀମିତ । ଏତେ ବିରାଟ ଜନ ସମୁଦାୟକୁ ଖାଦ୍ୟ, ବସ୍ତ୍ର, ବାସଗୃହ, ଶିକ୍ଷା, ସ୍ୱାସ୍ଥ୍ୟସେବା, ଗମନାଗମନ ସୁବିଧା, ଭଲ ପରିବେଶ ଯୋଗାଇବା ଅସମ୍ଭବ ହୋଇ ପଡିବ । ବଂଚିବା ବି ଅନେକଙ୍କ ପକ୍ଷରେ କଷ୍ଟ କର ହୋଇପଡିବ । ହୁଏତ ନୂଆ ନୂଆ ଚାଷ ପ୍ରଣାଳୀରେ ଖାଦ୍ୟ ଉତ୍ପାଦନ ବଢାଇ ଦିଆଯାଇ ପାରେ ଓ କିଛି ବର୍ଷ ପାଇଁ ସମସ୍ତଙ୍କୁ ଅନ୍ତତଃ ଚଳିବା ପାଇଁ ଖାଦ୍ୟ ଯୋଗାଇ ଦିଆଯାଇପାରେ । ମାତ୍ର ତାର ବି ସୀମା ଅଛି । ଯୁଗଯୁଗରୁ ପ୍ରକୃତି ସଂଚୟ କରି ରଖିଥିବା ଖଣିଜ ସଂପଦ ସରିଯିବ । ଜନସଂଖ୍ୟା ଚାପରେ ଜଳ, ବାୟୁ, ପରିବେଶ ଦୂଷିତ ହୋଇ ପଡିବ ।

ଏହି ସଂକଟକୁ ମୁକାବିଲା କରିବା ପାଇଁ ମିଳିତ ଜାତି ସଂଘ ଉଦ୍ୟମରେ 1974ରେ ବୁକାରେଷ୍ଟ(ରୁମାନିଆ) ଓ 1984ରେ ମେକ୍ସିକୋ ଠାରେ ଦୁଇଟି ବିଶ୍ୱ ଜନସଂଖ୍ୟା ସମ୍ମିଳନୀ ହୋଇଯାଇଛି । ଏହାପରେ 1994ରେ କାଏରୋ (ମିଶର) ଠାରେ ଯେଉଁ ବିଶ୍ୱ ସମ୍ମିଳନୀ ହୋଇଯାଇଛି ତାହାର ନାମକରଣ ହୋଇଛି ଜନସଂଖ୍ୟା ଓ ବିକାଶ ସଂପର୍କରେ ବିଶ୍ୱ ସମ୍ମିଳନୀ (International Conference on Population and Development ବା ICPD)। କାଏରୋରେ 179ଟି ଦେଶରୁ 10,257 ଜଣ ପ୍ରତିନିଧି ଯୋଗ ଦେଇଥିଲେ । ଏମାନଙ୍କ ମଧ୍ୟରେ ସରକାରୀ, ବେସରକାରୀ, ସ୍ୱେଚ୍ଛାସେବୀ ସବୁସ୍ତରର ସଦସ୍ୟ ଥିଲେ । ଏଠାରେ ଆଗାମୀ 20 ବର୍ଷପାଇଁ ଯେଉଁ କାର୍ଯ୍ୟସୂଚୀ (Programme of Action) ଗୃହୀତ ହେଲା ତାହା ହଠାତ୍ ଯେ ସଂପୂର୍ଣ୍ଣ କିଛି ନୂଆ କାର୍ଯ୍ୟକ୍ରମର ଆବିର୍ଭାବ ତା ନୁହେଁ । ବରଂ ଆଗରୁ ହୋଇଥିବା ଅନେକ ବିଶ୍ୱ ସମ୍ମିଳନୀରୁ ଜନ୍ମିଥିବା ଅନୁଭୂତିମାନଙ୍କର ସମୟୋପଯୋଗୀ ଏକ ନୂତନ ପ୍ରତିଫଳନ ବୋଲି ଏହାକୁ କୁହା ଯିବା ଠିକ୍ ହେବ ।

ବର୍ତ୍ତମାନ ପ୍ରଶ୍ନ ଉଠୁଛି, କାଏରୋ ସମ୍ମିଳନୀର ନୂତନ ଆଭିମୁଖ୍ୟ କଣ ଓ ଏଭଳି ନୂତନ ଦୃଷ୍ଟିର ଆବଶ୍ୟକତା କଣ ?

କେତେ ବର୍ଷଧରି ଚାଲିଥିବା ପରିବାର ନିୟୋଜନ ଏବଂ ପରିବାର କଲ୍ୟାଣ ଯୋଜନା ସଂପର୍କରେ ପ୍ରାୟ ସମସ୍ତେ ଜାଣନ୍ତି । ପ୍ରଥମେ ଆମ ଲକ୍ଷ୍ୟ ଥିଲା ଜନସଂଖ୍ୟା ବୃଦ୍ଧିହାର କମାଇବା । ଏଥିପାଇଁ ନାନା ଡାକ୍ତରୀ ଉପାୟମାନଙ୍କର ପ୍ରବର୍ତ୍ତନ ଓ ପ୍ରଚାର କରାଗଲା । ଜନ୍ମନିୟନ୍ତ୍ରଣ ପାଇଁ ଜନ୍ମନିରୋଧ ପ୍ରଣାଳୀମାନ ଗ୍ରହଣ କରାଗଲା । ଫଳରେ ଜନ୍ମ ହାର ବୃଦ୍ଧି କିଛିଟା କମିଲା । ମାତ୍ର ମୃତ୍ୟୁହାର ବି କମିଯାଉଥିବାରୁ ଜନ ବିସ୍ଫୋରଣର ତୀବ୍ରତା ଓ ଆଶଙ୍କା ଦୂର ହେଲାନାହିଁ ।

ଆଗରୁ କେବଳ ସଂଖ୍ୟା ଉପରେ ଗୁରୁତ୍ୱ ଦିଆଯାଉଥିଲା । ଜନ ସଂଖ୍ୟାବିତ୍‌ମାନେ ମୁଖ୍ୟତଃ ପରିସଂଖ୍ୟାନ ନେଇ ବ୍ୟସ୍ତ ରହୁଥିଲେ । ବର୍ତ୍ତମାନ ଆମେ ଗାଁ ଗହଳିର ଅଳ୍ପ ଶିକ୍ଷିତ ବା ଅଣଶିକ୍ଷିତ ଜଣେ ସାଧାରଣ ଲୋକଙ୍କୁ ଯଦି ଯାଇ କହିବା, ଭାଇ, ପୃଥିବୀରେ ଜନ ବିସ୍ଫୋରଣ ହେବାକୁ ଯାଉଛି, ସତର୍କ ରୁହ । ଏ କଥା ତା ପାଇଁ ଫମ୍ପା ବକ୍ତୃତା ହେବ । ତା ନିଜ ସଂସାର ପାଇଁ ଏକଥାର ଅର୍ଥ କଣ ସେ ବୁଝିପାରିବ ନାହିଁ । ପୁଣି ଭାବିବ ଯାହାର ଧନ, ସଂପତ୍ତି ଯଥେଷ୍ଟ ଅଛି ତା ପାଇଁ ଜନ୍ମନିୟନ୍ତ୍ରଣ ଅଦରକାରୀ । କେବଳ ଗୋଟିଏ କଥାରେ କୁହାଗଲା ସଂଖ୍ୟା କମାଇବା ପାଇଁ ଗୋଟିଏ ଦଂପତିକୁ ଆଦରିବାକୁ ପଡ଼ିବ ଜନ୍ମ ନିୟନ୍ତ୍ରଣର ବାଟ । ଜଣେ ଗରିବ ଲୋକର ଗୋଟିଏ ପିଲା ଥିଲେ କଣ ତାର ସୁଖୀ ଜୀବନ ଆପେ ଆସି ଯିବ ? ତା ପରିବାରରେ ସମସ୍ତଙ୍କ ପାଇଁ ଖାଦ୍ୟ, ବସ୍ତ୍ର, ଶିକ୍ଷା, ସ୍ୱାସ୍ଥ୍ୟର ଅଭାବ ରହିବ ନାହିଁ ? ତେଣୁ ଆସେ ଆର୍ଥିକ ବିକାଶର କଥା । ସେ ବିକାଶ ପୁଣି ସ୍ଥାୟୀ ହେବା ଦରକାର । ଅର୍ଥନୈତିକ ବିକାଶ, ଶିକ୍ଷା, ସ୍ୱାସ୍ଥ୍ୟ ସେବାରେ ଉନ୍ନତି, ଭଲ ଜୀବନ ସବୁ ଅତି ଯୋଡାଯୋଡି ; ଲୁଗାର ସବୁ ସୂତା ପରି । ଗୋଟିଏ ସୂତା କାଢ଼ି ଆଣି କଣ ପିନ୍ଧିହେବ ? କେବଳ ଲୁଗାଟିକୁ ପିନ୍ଧିହେବ ।

ସେହିପରି କେବଳ ଜନସଂଖ୍ୟା ନିୟନ୍ତ୍ରଣ ବା ସଂଖ୍ୟା କମାଇବା ଉପରେ ଆଖି ବୁଜି ଗୁରୁତ୍ୱ ଦେଲେ ହେବ ନାହିଁ । ବରଂ ଗୋଟିଏ ଦଂପତିଙ୍କ ନିର୍ଦ୍ଦିଷ୍ଟ ଆବଶ୍ୟକତା, ଭଲ ସ୍ୱାସ୍ଥ୍ୟ, ପିଲା ଓ ମାର ସ୍ୱାସ୍ଥ୍ୟ, ଜୀବନ ଯାପନର ସ୍ତର ପ୍ରତି ଦୃଷ୍ଟି ଦେବାକୁ ହେବ । ତାଙ୍କ ପାଖରେ ଜନ୍ମ ନିୟନ୍ତ୍ରଣ, ପରିବାର ସ୍ୱାସ୍ଥ୍ୟ (ପ୍ରଜନନ ଓ ଶିଶୁ ସ୍ୱାସ୍ଥ୍ୟ) ସଂପର୍କିତ ସବୁ ତଥ୍ୟ, ଉପାୟ, ଜ୍ଞାନ, ସେବା ପହଞ୍ଚାଇବାର ବ୍ୟବସ୍ଥା କରିବାକୁ ହେବ । ନୂତନ ଆଭିମୁଖ୍ୟଟି ହେଲା

ବ୍ୟବହାରକାରୀ ଦଂପତିର ଉପକାର ପାଇଁ ସହଜ-ଲଭ୍ୟ ସ୍ୱାସ୍ଥ୍ୟତଥ୍ୟ ଓ ସେବାଯୋଗାଣ । ସେମାନେ ହିଁ ଯୋଜନାର କେନ୍ଦ୍ର ବିନ୍ଦୁ ।

ଆଭିମୁଖ୍ୟ ତଥା କାର୍ଯ୍ୟପଛାର ପରିବର୍ତ୍ତିତ ଢାଞ୍ଚାକୁ ପାରାଡାଇମ୍ ପରିବର୍ତ୍ତନ (Paradigm Shift ) ବୋଲି କହୁଛନ୍ତି । ଏଥିରେ କେବଳ ସଂଖ୍ୟା କମାଇବା ଭଳି ଗତାନୁଗତିକ ଲକ୍ଷ୍ୟ ନାହିଁ । ଏହାକୁ ଲକ୍ଷ୍ୟ ବିହୀନ ଆଭିମୁଖ୍ୟ ବୋଲି (target free approach)କେତେକ କହୁଛନ୍ତି । କିନ୍ତୁ ଏଇ ପ୍ରୟୋଗଟି ଠିକ୍ ନୁହେଁ । କୌଣସି କାର୍ଯ୍ୟକ୍ରମ ଲକ୍ଷ୍ୟ ବିହୀନ ହୋଇ ନପାରେ । ବରଂ କୁହାଯିବା ଉଚିତ ଯେ ନୂତନ ଆଭିମୁଖ୍ୟଟି କେବଳ ଜନ ସଂଖ୍ୟା ବୃଦ୍ଧିର ସଂଖ୍ୟାଗତ ଦିଗରେ ସୀମାବଦ୍ଧ ନୁହେଁ । ଜନ ସଂଖ୍ୟା ବୃଦ୍ଧି ହାରକୁ କମାଇବା ଏବଂ ଜନ୍ମ ମୃତ୍ୟୁ ହାରରେ ସନ୍ତୁଳନ ଆଣିବା ଆମର ସ୍ଥାୟୀ ଲକ୍ଷ୍ୟ । ଉପାୟ କୌଶଳ ପରିବର୍ତ୍ତନରେ ହିଁ ଆମେ ସାମଗ୍ରିକ ଉଦ୍ଦେଶ୍ୟ ପୂରଣ କରିପାରିବା ।

ତେବେ କାଏରୋ ୧୨୨୪ ସମ୍ମିଳନୀରୁ ବିଶ୍ୱ ପାଇଁ କଣ କଣ ନୂଆ ବାର୍ତ୍ତା ଆସିଲା ଏବେ ଦେଖିବା । ନୂତନ କାର୍ଯ୍ୟକ୍ରମ ପାଇଁ ମିଳିତ ଜାତି ସଂଘ, ଜନ ସଂଖ୍ୟା କାର୍ଯ୍ୟପାଇଁ ଜାତି ସଂଘର ପାଣ୍ଠି (UNFPA) ପ୍ରତିଶ୍ରୁତିବଦ୍ଧ । ସେହିପରି ଭାରତ ସମେତ ଅନେକ ଦେଶମାନେ ମଧ୍ୟ ।

କାଏରୋରେ ଯେଉଁ ରାଜିନାମା ହେଲା ତାର ସାର ବସ୍ତୁ ଗୁଡିକ ଏହିପରି :

1. ଜନ ସଂଖ୍ୟାର ପରିସଂଖ୍ୟାନ ଗତ ଲକ୍ଷ୍ୟ ବଦଳରେ ବ୍ୟକ୍ତି ବିଶେଷର ପ୍ରୟୋଜନ ଉପରେ ଗୁରୁତ୍ୱ ପ୍ରଦାନ ।
2. ବାଳିକାମାନଙ୍କର ଶିକ୍ଷା, ମହିଳାମାନଙ୍କର ସ୍ୱାସ୍ଥ୍ୟ, ଶିଶୁ ସ୍ୱାସ୍ଥ୍ୟ ଓ ଶିଶୁ ସୁରକ୍ଷା ଉପରେ ସରକାର ସ୍ୱତନ୍ତ୍ର ଗୁରୁତ୍ୱ ଦେବେ ।
3. ପ୍ରଜନନ ସ୍ୱାସ୍ଥ୍ୟ ସେବାର ପରିବ୍ୟାପ୍ତି ।
4. ଏବଂ ଏଥିପାଇଁ ଅତି ଜରୁରୀ ହେଲା ମହିଳାମାନଙ୍କୁ କ୍ଷମତାପନ୍ନ କରିବା, ତାପରେ ନାରୀ ପୁରୁଷ ଭିତରେ ବାଛ ବିଚାର, ଉଚ୍ଚ ନୀଚ ଭାବନାକୁ ଲୋପ କରିବା ।

5. ପ୍ରଜନନ ସ୍ୱାସ୍ଥ୍ୟାଭିମୁଖୀ କାର୍ଯ୍ୟପନ୍ଥାର ଅନ୍ତର୍ନିହିତ ତତ୍ତ୍ୱଗୁଡ଼ିକ ହେଲା :

(କ) ଉଭୟ ପୁରୁଷ ଓ ସ୍ତ୍ରୀର ଯୌନ ସ୍ୱାସ୍ଥ୍ୟ (ଖ) ନିରାପଦ ଓ ସୁଖୀ ମାତୃତ୍ୱ (ଗ) ନିରାପଦ ଗର୍ଭାବସ୍ଥା ଓ ପ୍ରସବ (ଘ) ବିବିଧ ସ୍ୱାସ୍ଥ୍ୟସେବାର ଏଭଳି ପର୍ଯ୍ୟାପ୍ତ ପରିଚଳନ ଯାହା ନାରୀ ପୁରୁଷର ଯୌନ ସ୍ୱାସ୍ଥ୍ୟ, ପ୍ରଜନନ,ସନ୍ତାନ ଲାଭ ଜନିତ ସମସ୍ତ ସ୍ୱାସ୍ଥ୍ୟଗତ ଆବଶ୍ୟକତାକୁ ପୂରଣ କରିପାରିବ । ଏହା ଗତାନୁଗତିକ ପରିବାର ନୟୋଜନ ଯୋଜନା ଠାରୁ ଅଧିକ ବ୍ୟାପକ, ଅଧିକ ଗଭୀର ।

ମୋଟାମୋଟି କହିବାକୁ ଗଲେ ଏହା ମୁଖ୍ୟତଃ ସ୍ୱାସ୍ଥ୍ୟ, ଶିକ୍ଷା, ସଚେତନତାର କାର୍ଯ୍ୟକ୍ରମ । ଗରିବ ଦଂପତିଟି ବି ଅନୁଭବ କରିଛନ୍ତି ଯେ ବହୁ କୁଟୁମ୍ବୀ ହୋଇ ନିଜର ଓ ପିଲାମାନଙ୍କର ଦୁଃଖ ଯନ୍ତ୍ରଣା ଦେଖିବା ସୁଖର କଥାନୁହେଁ । ତାଙ୍କର ବି ସୁନେଲି ଭବିଷ୍ୟତର ସ୍ୱପ୍ନ ମନ ଗହୀରରେ ଅଛି । ତାଙ୍କ ପାଖରେ ସାଧନ ଓ ଉପାୟ ପହଞ୍ଚାଇବାକୁ ହେବ । ଜନସଂଖ୍ୟା ବୋମା ଫାଟିଲା ଫାଟିଲା ବୋଲି କହି ଭୟ ସୃଷ୍ଟି କରି ଲାଭନାହିଁ । ବରଂ ପ୍ରଜନନ ଓ ପରିବାର ସ୍ୱାହ୍ୟ ବିଷୟରେ ସଂପୂର୍ଣ୍ଣ ସ୍ପଷ୍ଟ ତଥ୍ୟ ସେମାନଙ୍କୁ ଦେଇ କହିବାକୁ ପଡ଼ିବ ଯେ ଏକାଧିକ ପ୍ରଣାଳୀ ମଧ୍ୟରୁ ସେମାନେ ଉପଯୋଗୀ ବାଟଟି ବାଛନ୍ତୁ । ଡାକ୍ତର, ସ୍ୱାସ୍ଥ୍ୟ କର୍ମୀ, ସ୍ୱାସ୍ଥ୍ୟ ବ୍ୟବସ୍ଥାର ଆବଶ୍ୟକତା ବୁଝନ୍ତୁ ଓ ସେଗୁଡ଼ିକ ଦାବୀ କରନ୍ତୁ । ତାଙ୍କ ନିଜ ଜୀବନ ସୁଖକର ହୋଇ ପାରିବ ।

ଶିକ୍ଷା କାର୍ଯ୍ୟକ୍ରମ ହିସାବରେ ସ୍କୁଲ କଲେଜର ଛାତ୍ର, ଛାତ୍ରୀ ତଥା ନବ ସାକ୍ଷରମାନଙ୍କ ମଧ୍ୟରେ ଏ ବାର୍ତ୍ତାକୁ ପ୍ରତିଷ୍ଠା କରିବାକୁ ହେବ । ଏଇଠି ସାକ୍ଷରତା ଓ ଶିକ୍ଷାକର୍ମୀମାନଙ୍କର ସହାୟତା ଆବଶ୍ୟକ ।

ଜନ ସଂଖ୍ୟା ଓ ବିକାଶ ଶିକ୍ଷାର ପଥ ଏଇଠି ସରିଯାଇନାହି । ଅନ୍ୟ ବିଷୟ ଗୁଡ଼ିକ ହେଲା :

1. ନିରବଚ୍ଛିନ୍ନ ବିକାଶ । (Sustainable development)

2. ଜନ ସଂଖ୍ୟାର ସ୍ଥାନାନ୍ତର । (migration)

3. ସହର ସୃଷ୍ଟି, ସହରମାନଙ୍କୁ ଗ୍ରାମାଞ୍ଚଳରୁ କ୍ରମେ ଅଧିକ ଲୋକ ଆସିବା ଫଳରେ ଉପୁଜୁଥିବା ସମସ୍ୟା ।

4. କୈଶୋର ସ୍ୱାସ୍ଥ୍ୟ ଶିକ୍ଷା ।

5. ଏହି କାର୍ଯ୍ୟକ୍ରମର ସଫଳ ରୂପାୟନ ପାଇଁ ସହଯୋଗୀତାର ସେତୁମାନ ଗଢିବାକୁ ହେବ । ସହଯୋଗୀତାରେ ମୁଖ୍ୟତଃ ସ୍ୱାସ୍ଥ୍ୟ, ସମାଜ ମଂଗଳ, ଶିକ୍ଷାର ବିଭିନ୍ନ ମଂଚମାନ ସଂପୃକ୍ତ ହେବା ଆବଶ୍ୟକ । ଜନ ସଂଖ୍ୟା ଓ ବିକାଶ ଶିକ୍ଷା ବିଦ୍ୟାଳୟ, ବିଶ୍ୱ ବିଦ୍ୟାଳୟ ଏବଂ ପ୍ରୌଢଶିକ୍ଷା ବିଭାଗମାନଙ୍କରେ ପାଠ୍ୟକ୍ରମରେ ଅନ୍ତର୍ଭୁକ୍ତ ହୋଇଛି । ଶିକ୍ଷକ ଓ ପ୍ରଚାରକମାନଙ୍କୁ ନୂତନ ପରିବର୍ତ୍ତିତ ଦୃଷ୍ଟିକୋଣ ସମ୍ବନ୍ଧରେ ତାଲିମ ଦିଆଯାଇଛି ।

ପରବର୍ତ୍ତୀ ପୃଷ୍ଠା ଗୁଡିକ ଏ ଦିଗରେ ସାହାଯ୍ୟ କରିବ ।

❁❁❁

# ଜନସଂଖ୍ୟା ଶିକ୍ଷାର କ୍ରମବିକାଶ : ଅତୀତ ଓ ବର୍ତ୍ତମାନ

ଶ୍ରୀ ବୈଷ୍ଣବ ଚରଣ ମହାନ୍ତି

## ଜନସଂଖ୍ୟା ଶିକ୍ଷା କ'ଣ ?

ଜନସଂଖ୍ୟା କହିଲେ ସାଧାରଣତଃ ଗୋଟିଏ ନିର୍ଦ୍ଦିଷ୍ଟ ଭୌଗୋଳିକ ଅଞ୍ଚଳରେ ରହୁଥିବା ଲୋକସଂଖ୍ୟାକୁ ବୁଝାଏ । ଉଦାହରଣ ସ୍ୱରୂପ ଗୋଟିଏ ଗାଆଁରେ ଯେତିକି ଲୋକ ଘରଦ୍ୱାର କରି ରହିଛନ୍ତି ସେହି ସମସ୍ତଙ୍କ ମୁଣ୍ଡଗଣତି କଲେ ଯେତେ ହେବ ତାହା ସେହି ଗାଆଁର ଜନସଂଖ୍ୟା ବୋଲି କୁହାଯାଏ । ସେମିତି ଗୋଟିଏ ପଞ୍ଚାୟତ, ଗୋଟିଏ ଜିଲ୍ଲା, ଗୋଟିଏ ପ୍ରଦେଶ ବା ଗୋଟିଏ ଦେଶର ଜନସଂଖ୍ୟା ଆମେ ଗଣନା କରିପାରିବା । ୧୯୯୧ ଜନଗଣନା ଅନୁସାରେ ଆମ ରାଜ୍ୟର ଜନସଂଖ୍ୟା ଥିଲା 3.15କୋଟି ଏବଂ ଆମ ଦେଶର ଜନସଂଖ୍ୟା ଥିଲା ୪4.3୨କୋଟି ।

ସାଧାରଣତଃ ଆମେ ଯାହା ଦେଖି, ଶୁଣି, ପଢ଼ି, ଅନୁଭବ କରି ଜାଣିପାରୁ, ସେହି ଅନୁଭବକୁ ପରବର୍ତ୍ତୀ ସମୟରେ କାମରେ ଲଗାଇପାରୁ, ନିଜର ଶାରୀରିକ, ମାନସିକ, ଆର୍ଥନୀତିକ ତଥା ସାମାଜିକ ବିକାଶ ଆଦି ନିମିତ୍ତ ଉପଯୋଗ କରିପାରୁ, ତାକୁ ହିଁ ଆମେ ଶିକ୍ଷା କହୁ । ମୋଟାମୋଟି କହିବାକୁ ଗଲେ ଆମେ ଯେଉଁ ନୂଆ ଜ୍ଞାନ ଆହରଣ କରୁ ବା ନୂଆ କଥା ଜାଣିପାରୁ ତାକୁ ହିଁ ଆମେ ଶିକ୍ଷା କହୁ ।

କିନ୍ତୁ ଏଠାରେ ଆମେ ଏ ଯେଉଁ "ଜନସଂଖ୍ୟା ଶିକ୍ଷା" ବୋଲି କହୁଛୁ, ଏହି ଜନସଂଖ୍ୟା ଶିକ୍ଷା କ'ଣ ? ଏହାର ସଂଜ୍ଞା ଓ ସ୍ୱରୂପ କ'ଣ ? ଆମେ ଯଦି ଉଭୟ "ଜନସଂଖ୍ୟା" ଓ "ଶିକ୍ଷା" ଏଇ ଶବ୍ଦ ଦି'ଟାର ଅର୍ଥକୁ ଯୋଡ଼ି "ଜନସଂଖ୍ୟା ଶିକ୍ଷା"ର ଅର୍ଥ କରିବା ତେବେ ଏହାର ମୋଟାମୋଟି ଅର୍ଥ ହେବ ଆମ ଜନସଂଖ୍ୟା ବିଷୟରେ ଆମେ ଜାଣିବା । କିନ୍ତୁ ଜାଣିବା ପୂର୍ବରୁ ପ୍ରଶ୍ନ ଉଠୁଚି ଆମେ କାହିଁକି ଜାଣିବା, କ'ଣ ପାଇଁ ଜାଣିବା, ଜାଣିଲେ ଆମର ବା ଏ କେଉଁ କାମରେ ଆସିବ ? "ଜନସଂଖ୍ୟା ଶିକ୍ଷା" ବୋଲି ଗୋଟାଏ ନୂଆ କଥା କାହିଁକି ଆରମ୍ଭ ହେଲା ଏବଂ ଜନସଂଖ୍ୟା ଶିକ୍ଷାରୁ ଆମେ କ'ଣ ଜାଣିବା ?

ଅସଲ ମୂଳ କଥାଟି ହଉଚି ଆମେ ଶିଖୁ ତଳୁ ଉପରକୁ ଉଠିବା ପାଇଁ, ଆଗେଇବା ପାଇଁ । ଶିକ୍ଷାଟା ସବୁବେଳେ ଅସଲ ସମସ୍ୟାଟାକୁ ଚିହ୍ନିବାର ସୁଯୋଗ ଦିଏ ଏବଂ ତା' ସାଙ୍ଗକୁ ସମାଧାନର ସମ୍ଭାବ୍ୟ ବାଟଟିମାନ ମଧ୍ୟ ବତେଇ ଦିଏ । ସମସ୍ୟାଟା ଯେତେବେଳେ ଅସମ୍ଭାଳ ହୋଇଉଠେ, ମଣିଷ ସମାଧାନର ବାଟ ଖୋଜିବସେ । ସେଇ ଖୋଜିବାଟା ଓ ଖୋଜି ପାଇବାଟା ହିଁ ତା'ର ଶିକ୍ଷା । ଏଠି ଜନସଂଖ୍ୟା ବୃଦ୍ଧିଟା ଆମ ଦେଶ ପାଇଁ, ଆମ ବିଶ୍ୱ ପାଇଁ ଏପରି ଏକ ସମସ୍ୟା ହୋଇ ଦେଖା ଦେଲାଣି ଯେ ଜନସଂଖ୍ୟା ନିୟନ୍ତ୍ରଣ ନହେଲେ ମାନବସଭ୍ୟତା ତିଷ୍ଠି ରହିବା ମଧ୍ୟ ଅସମ୍ଭବ ହୋଇ ଉଠିବ । ଦେଶର ଲୋକ ସଂଖ୍ୟା, ବିଶ୍ୱର ଲୋକସଂଖ୍ୟା ହୁ ହୁ ହୋଇ ବଢୁଛି । ଏହାକୁ ଆଜିକାଲି "ଜନସଂଖ୍ୟା ବିସ୍ଫୋରଣ" ବୋଲି କୁହାଯାଉଛି ।

1650 ମସିହାରେ ବିଶ୍ୱର ଜନସଂଖ୍ୟା ଥିଲା ମାତ୍ର 50 କୋଟି । ଅର୍ଥାତ୍ ଆମ ଦେଶରେ ଯେତିକି ଲୋକ ଅଛନ୍ତି ସେତେବେଳେ ସାରା ପୃଥିବୀରେ ଏହାର ଅଧା ଲୋକ ରହୁଥିଲେ । ସବୁଠାରୁ ଚିନ୍ତାର କାରଣ ହେଉଛି ଯେ 1800 ମସିହାରୁ 1930 ମସିହା ପର୍ଯ୍ୟନ୍ତ ପୃଥିବୀରେ 100 କୋଟି ଲୋକ ବଢ଼ିବା ପାଇଁ 130 ବର୍ଷ ଲାଗିଥିଲା ; କିନ୍ତୁ ବର୍ତ୍ତମାନ ମାତ୍ର 10 ବର୍ଷରେ ପୃଥିବୀର ଜନସଂଖ୍ୟା 100 କୋଟି ବଢ଼ି ଯାଉଛି । ଏଣୁ ଏ ମାନବ ସଭ୍ୟତା ରହିବ ତ ? ଏତେ ଲୋକ ରହିବା ପାଇଁ ଜାଗା କେଉଁଠି ମିଳିବ ? ଖାଇବା ପିଇବାକୁ ଏତେ ଆସିବ କେଉଁଠୁ ? ସଗର ବଂଶ ଭଳି ଏମାନେ ତ ସବୁ ଚରିଯିବେ । ଏତେ

ବିପୁଳ ଜନସଂଖ୍ୟାର ଆବଶ୍ୟକତା ଭରଣା କରିବାକୁ ଆମର ଗଚ୍ଛିତ ପ୍ରାକୃତିକ ସମ୍ପଦର ଅଭାବ ଏତିକିବେଳୁ ତ ଅନୁଭୂତ ହେଲାଣି । କାଠ, କୋଇଲା, ଜଙ୍ଗଲ, ପାଣି, ପବନ, ଖଣିଜ ସମ୍ପଦ ସବୁର ଅଭାବ ଦେଖାଦେଲାଣି । ଆଉ ପଚାଶ ବର୍ଷ ପରେ ଅବସ୍ଥା କ'ଣ ହବ କିଏ କହିବ ? ଜନସଂଖ୍ୟା ବୃଦ୍ଧି ସାଙ୍ଗକୁ ବେକାରୀ, ସାମାଜିକ ବିଶୃଙ୍ଖଳା, ସ୍ୱାସ୍ଥ୍ୟ ସମସ୍ୟା, ଅର୍ଥନୈତିକ ସମସ୍ୟା ଆଦି ବହୁ ସମସ୍ୟା ମୁଣ୍ଡ ଟେକିଲାଣି । ଏତେ ବିପୁଳ ଜନସଂଖ୍ୟାକୁ ନେଇ ଆମ ପରିବେଶ ପ୍ରଦୂଷିତ ହେଇ ଉଠିଲାଣି ।

ଯେଉଁଠି ଲୋକଙ୍କର ସର୍ବନିମ୍ନ ଆବଶ୍ୟକତା ; ଯଥା-ଖାଦ୍ୟ, ବସ୍ତ୍ର, ବାସଗୃହ, ପାନୀୟ ଜଳ, ସ୍ୱାସ୍ଥ୍ୟ ସେବା ଆଦିର ଅଭାବ ଦେଖାଦେଲାଣି, ସେଠାରେ ଆଗକୁ ମାଡ଼ିଯିବାର ପ୍ରଶ୍ନ ଉଠୁଚି କେଉଁଠୁ । ବିପୁଳ ତଥା ବର୍ଦ୍ଧିତ ଜନସଂଖ୍ୟା ବର୍ତ୍ତମାନ ବିଶ୍ୱପାଇଁ ଏକ ବୋଝ ହୋଇ ଉଠିଲାଣି । ଏଣୁ ଗତି, ପ୍ରଗତି, ଅଗ୍ରଗତି, ଉନ୍ନତି, ବିକାଶ ଆଦି ଆଗେଇଯିବା ସମ୍ବନ୍ଧରେ ଯେତେ ସବୁ ବଡ଼ ବଡ଼ କଥା କୁହାଗଲେ ମଧ୍ୟ ଜନସଂଖ୍ୟା ବୃଦ୍ଧି ସବୁରି ଆଗରେ ବାଡ଼ଟିଏ ହୋଇ ଠିଆ ହେଉଛି ଏବଂ ପ୍ରଗତିର ପାଦକୁ ପଛକୁ ଟାଣୁଛି ; କାରଣ ଜନସଂଖ୍ୟାର ପ୍ରଭାବରେ ବ୍ୟକ୍ତି, ପରିବାର ତଥା ସମାଜ ସତତ ପ୍ରଭାବିତ । ଜନସଂଖ୍ୟା ଦ୍ୱାରା ଆମର ଶିକ୍ଷା, ସ୍ୱାସ୍ଥ୍ୟ, ଖାଦ୍ୟ, ବସ୍ତ୍ର, ପାନୀୟ, ପରିଷ୍କାର ପରିଚ୍ଛନ୍ନତା, ପ୍ରାକୃତିକ ସମ୍ପଦ, ସମାଜ, ସଂସ୍କୃତି , ଅର୍ଥନୀତି ସବୁକିଛି ପରୋକ୍ଷ ତଥା ପ୍ରତ୍ୟକ୍ଷ ଭାବେ ପ୍ରଭାବିତ ହେଉଛି ।

## ଜନସଂଖ୍ୟା ଜାଣିହୁଏ କେମିତି ?

ଜନସଂଖ୍ୟା ଜାଣିହୁଏ ଜନଗଣନା ଦ୍ୱାରା । ପ୍ରତି ଦଶବର୍ଷରେ ଥରେ ଜଣଗଣନା କରାଯାଏ । ଆମ ଦେଶରେ ପ୍ରଥମ ଜନଗଣନା ୧୫୫୧ରେ କରାଯାଇଥିଲା । ଗତ ଜନଗଣନା ୧୯୯୧ରେ କରାଯାଇଥିଲା ଏବଂ ୨୦୦୧ରେ ପରବର୍ତ୍ତୀ ଜନଗଣନା କରାଯିବ । ପ୍ରତି ଦଶବର୍ଷର ଜନଗଣନାରୁ ଜନସଂଖ୍ୟା ଭିତରେ ଯେଉଁ ଫରକ୍ ଦେଖାଯାଏ ସେଇଥିରୁ ଦେଶର ହାରାହାରି ଜନସଂଖ୍ୟା ବୃଦ୍ଧି କେତେ ହେଲା ଜାଣି ହୁଏ । ୧୯୦୧ରେ ଏ ଶତାବ୍ଦୀର ପ୍ରଥମ ଜନଗଣନା କରାଯାଇଥିଲା ଓ ଗତ ୧୯୯୧ ଥିଲା ଏ ଶତାବ୍ଦୀର ଶେଷ ଜନଗଣନା ।

୧୯୦୧ରେ ଭାରତର ଜନସଂଖ୍ୟା ୨୩.୮୪କୋଟି ଥିବା ସ୍ଥଳେ ୧୯୨୧ରେ ଏହା ୮୪.୩୪କୋଟିକୁ ବୃଦ୍ଧି ପାଇଛି । 2000 ମସିହା ବେଳକୁ ଏହା 100 କୋଟିକୁ ଟପିଯିବ । ୧୯୪୧ରୁ ୧୯୫୧ ଏଇ ଦଶ ବର୍ଷ ଭିତରେ ଦେଶର ଜନସଂଖ୍ୟା 4କୋଟି ବୃଦ୍ଧି ପାଇଥିଲା କିନ୍ତୁ ୧୯୮୧ରୁ ୯୧ ଭିତରେ ଏହା 16କୋଟିକୁ ବୃଦ୍ଧି ପାଇଛି । ଏଇ ହାରରେ ଯଦି ଜନସଂଖ୍ୟା ବୃଦ୍ଧି ହୁଏ ତେବେ ଆମେ ରହିବା କେଉଁଠି ? ଖାଇବା କ'ଣ ? ବଞ୍ଚିବା କେମିତି ? ଏ ମଣିଷ ସମାଜ ତିଷ୍ଠି ପାରିବ ତ ?

## ଜନସଂଖ୍ୟା ବୃଦ୍ଧିର କାରଣ :

ଆଗ କାଳରେ ଚିକିତ୍ସାର ସୁବିଧା ନଥିଲା । ଚିକିତ୍ସା ବିଜ୍ଞାନର ଉନ୍ନତି ସାଙ୍ଗକୁ ଗାଆଁ ଗହଳିରେ ଡ଼ାକ୍ତର ଓ ଡ଼ାକ୍ତରଖାନାର ଅଭାବ ଆଜିକାଲି ଆଉ ପ୍ରାୟ ନାହିଁ । ବହୁ ନୂଆ ନୂଆ ଔଷଧ ମଧ୍ୟ ମିଳୁଛି । ଲୋକଙ୍କର ହାରାହାରି ଆୟୁଷ ମଧ୍ୟ ବୃଦ୍ଧି ପାଇଛି । ମୃତ୍ୟୁହାର କମି ଯାଇଛି, କିନ୍ତୁ ଜନ୍ମହାର ବୃଦ୍ଧି ହୋଇ ଚାଲିଛି । ଆମ ଦେଶରେ ୧୯୦୦ରୁ ୧୯୧୧ ମସିହା ମଧ୍ୟରେ 1000 ଲୋକରେ 49 ଲୋକ ଜନ୍ମ ହେଉଥିଲେ , 42 ଲୋକ ମରୁଥିଲେ । ଅର୍ଥାତ୍ ପ୍ରତି ହଜାରରେ 6ଲୋକ ବଢ଼ିଯାଉଥିଲେ । କିନ୍ତୁ ୧୯୨୧ରେ ପ୍ରତି ହଜାରରେ ଜନ୍ମ ହଉଛନ୍ତି 31 ଏବଂ ମରୁଛନ୍ତି 10; ଅର୍ଥାତ୍ ପ୍ରତି ହଜାରରେ 21ଲୋକ ବଢ଼ିଯାଉଛନ୍ତି । ଗୋଟିଏ କୁଣ୍ଡରେ ଧରାଯାଉ ଦି'ଟି ନଳା ଅଛି । ଗୋଟିଏ ନଳାରେ କୁଣ୍ଡରେ ପାଣି ପଶେ, ଆରଟିରେ ବାହାରି ଯାଏ । ଯଦି କୁଣ୍ଡକୁ ଘଣ୍ଟାପ୍ରତି ଅଧିକ ପାଣି ପଶେ ଓ କମ୍ ପାଣି ବାହାରିଯାଏ ତେବେ କୁଣ୍ଡ ଉଚ୍ଛୁଳିବା ସ୍ୱାଭାବିକ୍ । ଠିକ୍ ଆମ ପୃଥିବୀର ଅବସ୍ଥା ସେଇଆ । ଆମ ପୃଥିବୀରେ ପ୍ରତି ମିନିଟ୍‌କୁ ୧୫୦ଟି ପିଲା ଜନ୍ମ ହଉଛନ୍ତି । ଇଏ ହଉଚି ୧୯୨୦ ମସିହାର ହିସାବ । 1650ରେ ପୃଥିବୀର ଲୋକସଂଖ୍ୟା ଥିଲା 50 କୋଟି । ଏବେ ହେଲାଣି 600 କୋଟି । ଆଗକାଳରେ ହଇଜା, ପ୍ଲେଗ୍, ବସନ୍ତ ଆଦି ମହାମାରୀରେ ହଜାର ହଜାର ଲୋକ ମରୁଥିଲେ । ଚିକିତ୍ସା ବିଜ୍ଞାନ ସେ ସବୁକୁ ବନ୍ଦ କରିଦେଇଛି । ଅନ୍ୟ ପକ୍ଷରେ ଜନ୍ମହାର ବଢ଼ି ଚାଲିଛି ।

ବିବାହଟା ଏକ ସାର୍ବଜନୀନ ପରମ୍ପରା, ଅର୍ଥାତ୍ ବୟସ ହେଲେ ବିବାହଟା ନିଶ୍ଚିତ ବୋଲି ଆମ ସମାଜରେ ଆମେ ଗ୍ରହଣ କରି ନେଇଛୁ । ବିବାହ ତ ବିବାହ, ପୁଣି ଅଳ୍ପ ବୟସରେ ବାହା ହୋଇ ପଡ଼ିବାରୁ ଅଳ୍ପ ବୟସରେ ବେଶି ଛୁଆ ପିଲାର ମା' ବାପ ହେବା ସ୍ୱାଭାବିକ୍ । ଛୁଆ ଜନ୍ମ କିପରି ହୁଏ, ଛୁଆ ପ୍ରତି ମା' ବାପାଙ୍କର ଦାୟିତ୍ୱ କ'ଣ, ସେମାନଙ୍କର ଯତ୍ନ କିପରି ନିଆଯାଏ, ଏକଥା ନ ଜାଣି ମଧ୍ୟ ଆମ ସମାଜରେ ବହୁ ଦମ୍ପତି ବାପା ମା' ହେଇ ଯାଆନ୍ତି । ନିରକ୍ଷରତା ଓ ଅଜ୍ଞତା ଏଥିପାଇଁ ମୁଖ୍ୟତଃ ଦାୟୀ ।

ଅନ୍ୟ ଏକ କାରଣ ହେଲା ବହୁ ଅନ୍ଧବିଶ୍ୱାସ ଓ ଭୁଲ୍ ଧାରଣା ଯୋଗୁଁ କେତେକ ଦମ୍ପତି ପୁଅଟିଏକୁ ଚାହିଁ ଚାହିଁ ପାଞ୍ଚ ଦଶ ପିଲାର ବାପ ମା' ହେବାର ନଜିର ମଧ୍ୟ ରହିଛି । ଆଗକାଳରେ ତ ''ସାତ ପୁଅର ମାଆ'' ହୁଅ ବୋଲି ଗୁରୁଜନମାନେ ଲଘୁଜନମାନଙ୍କୁ ଆଶୀର୍ବାଦ କରୁଥିଲେ । ସେ ଆଶୀର୍ବାଦ ଆଜିର ପରିସ୍ଥିତିରେ ଅଭିଶାପ ଛଡ଼ା ଆଉ କିଛି ନୁହେଁ । ଗାନ୍ଧାରୀ ଶତପୁତ୍ରର ଜନନୀ ହୋଇ ସେଇ କୁଳବାରୁଙ୍ଗା ପୁଅମାନଙ୍କ ପାଇଁ ତାଙ୍କ କୁଳ ଉଚ୍ଛନ୍ନ ହୋଇଥିବା କଥା ଆମେ ଜାଣୁ । ପିଲାଙ୍କୁ ଜନ୍ମ କରିବା ବଡ଼ କଥା ନୁହେଁ, ପିଲାଙ୍କୁ ମଣିଷ ପରି ମଣିଷ କରିବା ଆଜିର ପରିସ୍ଥିତିରେ ବଡ଼ କଥା ।

## ଜନସଂଖ୍ୟାକୁ ଶିକ୍ଷା ସହିତ ଯୋଡ଼ାଗଲା କାହିଁକି ?

ଏଇଠି ପ୍ରଶ୍ନ ଉଠିପାରେ ଜନ୍ମହାର କମାଇବାର କାମ ସ୍ୱାସ୍ଥ୍ୟ ବିଭାଗର, ଶିକ୍ଷା ବିଭାଗ ଏଥିରେ ମୁଣ୍ଡ ପୂରେଇଲା କାହିଁକି ? ଚିକିତ୍ସା ବିଜ୍ଞାନ ନୂଆ ନୂଆ ଔଷଧ ପତ୍ରର ଆବିଷ୍କାର କରି ଯେମିତି ମୃତ୍ୟୁହାର କମାଇ ଦେଇଛି, ସେମିତି ନୂଆ ନୂଆ ଜନ୍ମନିରୋଧର ଉପାୟମାନ ବାହାର କରି ଜନ୍ମହାର କମାଇବାର ଦାୟିତ୍ୱ ଚିକିତ୍ସା ବିଜ୍ଞାନର, ଏଠି ଶିକ୍ଷା ବିଭାଗର କାମ କ'ଣ ?

ଏଇଠି ଆମେ ଜାଣି ରଖିବା ଉଚିତ ଯେ ମଣିଷ ଛେଳି, ମେଣ୍ଢା, ଗାଈ, କୁକୁଡ଼ା କି ଆଉ କୌଣସି ପଶୁ ବା ପକ୍ଷୀ ନୁହଁ । କୌଣସି ପଶୁ ପକ୍ଷୀର ଦେହ ଅସୁସ୍ଥ ହେଲେ ସେ ଡ଼ାକ୍ତରଖାନା ଯାଏ ନାହିଁ ବା ନିଜ ଅଭାବ ଅସୁବିଧା ଅନୁଭବ କରି, ସମାଧାନର ବାଟ ସମୂହଭାବେ ବା ଏକାଏକା କରି ବସେ ନାହିଁ ।

ମଣିଷ ସେଇଥି ପାଇଁ ପଶୁ ଠାରୁ ଆଗୁଆ, ସୃଷ୍ଟିର ଶ୍ରେଷ୍ଠ ଜୀବ । ମଣିଷ ଏକ ସାମାଜିକ ପ୍ରାଣୀ, ବିଚାରବନ୍ତ ଜୀବ । ମଣିଷର ଶିକ୍ଷିବାର ଶକ୍ତି ଅଛି । ସମସ୍ୟା ସମାଧାନର ସାମର୍ଥ୍ୟ ଅଛି । ମଣିଷର ନିଜ ପାଇଁ, ନିଜ ସମାଜ ପାଇଁ, ଜାତି ପାଇଁ, ଦେଶ ପାଇଁ ଓ ସର୍ବୋପରି ସାରା ବିଶ୍ୱ ପାଇଁ ଦାୟିତ୍ୱ ଓ କର୍ତ୍ତବ୍ୟ ଅଛି । ଜନସଂଖ୍ୟା ନିୟନ୍ତ୍ରଣ ବର୍ତ୍ତମାନ ଏକ ମୁଖ୍ୟ ମାନବିକ କର୍ତ୍ତବ୍ୟ ଓ ଦାୟିତ୍ୱଭାବେ ଦେଖାଦେଇଛି । ସେଇ କର୍ତ୍ତବ୍ୟ ଓ ଦାୟିତ୍ୱ ବିଷୟରେ ସାଧାରଣ ମଣିଷକୁ ସଚେତନ କରାଇବା, ଜନସଂଖ୍ୟା ବୃଦ୍ଧିର କାରଣ, ଏହାର ଭୟାବହତା, ଏହାର ସକଳ କୁପ୍ରଭାବ ବିଷୟରେ ସାଧାରଣ ଲୋକଙ୍କୁ ସଚେତନ କରାଇବା, ଜଣାଇବା, ଶିଖାଇବା ହେଉଛି ଶିକ୍ଷା ବିଭାଗର କାମ । ଚିକିତ୍ସା ବିଜ୍ଞାନ ହୁଏତ ସମାଧାନର ସୂତ୍ର ବାହାର କରିପାରେ କିନ୍ତୁ ସେ ଲୋକଙ୍କ ପାଖକୁ ଯିବ ନାହିଁ । କିନ୍ତୁ ଶିକ୍ଷା ଲୋକଙ୍କ ପାଖକୁ ଯିବ, ଲୋକଙ୍କ ଭିତରେ ପଶିବ । ତାଙ୍କ ମଗଜରେ ପଶିବ ଏବଂ ଲୋକଙ୍କୁ ଟାଣି ନେବ ସେଇ ସମାଧାନର ସୂତ୍ରଗୁଡ଼ାକ ପାଖକୁ ସମସ୍ୟାର ସହଜ ସମାଧାନ କରିବା ପାଇଁ ଏବଂ ଖାସ୍ ଏଇଥିପାଇଁ ଜନସଂଖ୍ୟାକୁ ଶିକ୍ଷା ସହିତ ଯୋଡ଼ି ଜନସଂଖ୍ୟା ଶିକ୍ଷା କରାଯାଇଛି ।

ଏଇଠି ପୁଣି ପ୍ରଶ୍ନ ଉଠିପାରେ ଜନସଂଖ୍ୟା ଶିକ୍ଷାକୁ ସ୍କୁଲ, କଲେଜ୍ ଶିକ୍ଷା ସହିତ ନ ଯୋଡ଼ି ଗଣଶିକ୍ଷା ସହିତ ଯୋଡ଼ିବାରେ କି ଫାଇଦା ମିଳିବ ? ବର୍ତ୍ତମାନ ଆମ ରାଜ୍ୟରେ ଆମେ ଯାହାକୁ ଗଣଶିକ୍ଷା କହୁଚୁ ମାତ୍ର କିଛି ବର୍ଷ ପୂର୍ବରୁ ଆମେ ତାକୁ ଜନଶିକ୍ଷା କହୁଥିଲୁ । ଅନ୍ୟାନ୍ୟ ରାଜ୍ୟରେ ତାକୁ ଏବେ ବି ପ୍ରୌଢ଼ଶିକ୍ଷା କୁହାଯାଉଛି । ଏହା ହେଉଛି ବୟସ୍କ ଲୋକଙ୍କ ପାଇଁ ଶିକ୍ଷା । ବୟସ୍କ ଲୋକ କହିଲେ ପୁଣି ଏଠି ମୁଖ୍ୟତଃ 15ରୁ 35 ବର୍ଷ ବୟସର ଲୋକମାନଙ୍କୁ ବୁଝାଏ । ଏଇ ବୟସଟା ଜନସଂଖ୍ୟା ପରିପ୍ରେକ୍ଷୀରେ ସବୁଠୁ ବଳି ଗୁରୁତ୍ୱପୂର୍ଣ୍ଣ । କାରଣ ଏଇ ବୟସରେ ମଣିଷ ପ୍ରଥମ କରି ବାପା ବା ମା' ହେବାର ସାମର୍ଥ୍ୟ ଲାଭ କରେ । ମଣିଷ ବାହାସାହା ହୁଏ, ଘର ସଂସାର କରେ, ପିଲାଛୁଆର ବାପମା ହୁଏ, ପିଲାଛୁଆଙ୍କୁ ବଢ଼େଇ ପଢ଼େଇ ମଣିଷ କରେ । ଗବେଷଣା କରି ଦେଖାଯାଇଛି ଯେଉଁମାନେ ଲେଖିପଢ଼ି ଜାଣନ୍ତି ନାହିଁ ସେଇମାନଙ୍କର ପିଲାଛୁଆ ବେଶି ହୁଅନ୍ତି । ପିଲାଛୁଆର ଉପଯୁକ୍ତ ଯତ୍ନ ଅଭାବରୁ ବେଶି ପିଲାଛୁଆ ମଧ୍ୟ ସେଇମାନଙ୍କର ମରନ୍ତି । ଏଣୁ ସେମାନଙ୍କୁ ଅକ୍ଷର ଶିକ୍ଷା ଦେବା ସାଙ୍ଗକୁ

ଜନସଂଖ୍ୟା ଶିକ୍ଷା ଦିଆଗଲେ ଜନସଂଖ୍ୟା ନିୟନ୍ତ୍ରଣ କରିବାରେ ସବୁଠୁ ବେଶି କାମଦେବ ବୋଲି ବିଶେଷଜ୍ଞମାନେ ଅନୁଭବ କରନ୍ତି ଏବଂ ଏଇଥିପାଇଁ ଜନସଂଖ୍ୟା ଶିକ୍ଷାକୁ ଗଣଶିକ୍ଷା ସହିତ ଯୋଡ଼ା ଯାଇଛି ।

## ଜନସଂଖ୍ୟା ଶିକ୍ଷାର ଇତିହାସ :

ଜନସଂଖ୍ୟା ଶିକ୍ଷା ଗୋଟାଏ ପୂରାପୂରି ନୂଆ କଥା । ୧୨୫୦ ମସିହାରୁ ଆମ ଦେଶରେ ଏହାର ଆରମ୍ଭ । ସେଇଥିପାଇଁ ଏହାର ସଂଜ୍ଞା, ସ୍ୱରୂପ, ଏହାର ରୂପରେଖ ଓ କାର୍ଯ୍ୟକାରଣ ସମ୍ବନ୍ଧରେ ବୁଝାମଣାରେ ନାନା ଅଡୁଆ ଅସୁବିଧାମାନ ବେଳେ ବେଳେ ପଶିଯାଉଛି । କିଏ କହୁଚି ଇଏ ଜନ୍ମ ନିୟନ୍ତ୍ରଣ କାର୍ଯ୍ୟ ତ କିଏ କହୁଛି ହଁ ସେଇ ପରିବାର ନିୟନ୍ତ୍ରଣ ଛଡ଼ା ଇଏ ଆଉ କିଛି ନୁହଁ । କିନ୍ତୁ ପ୍ରକୃତରେ ଇଏ ଏକ ନିଆରା କାର୍ଯ୍ୟକ୍ରମ ଏବଂ ଏଇ ଜନସଂଖ୍ୟା ଶିକ୍ଷା କାର୍ଯ୍ୟକ୍ରମ ଭିତରେ ବୁଡ଼ିଯାଇଛି ଜନ୍ମନିୟନ୍ତ୍ରଣ କାର୍ଯ୍ୟକ୍ରମ । ଜନସଂଖ୍ୟା ଶିକ୍ଷା କାର୍ଯ୍ୟକ୍ରମ ଏକ ସାମାଜିକ କାର୍ଯ୍ୟକ୍ରମ, ଏକ ଶିକ୍ଷା କାର୍ଯ୍ୟକ୍ରମ ଏବଂ ଏହା ଜନ୍ମ ନିୟନ୍ତ୍ରଣ କାର୍ଯ୍ୟକ୍ରମର ବହୁ ଉପରେ, ପରିବାର କଲ୍ୟାଣ କାର୍ଯ୍ୟକ୍ରମଠାରୁ ବହୁ ବ୍ୟାପକ ।

1947ରେ ଦେଶ ଆମର ସ୍ୱାଧୀନ ହେବା ପରେ ଦେଶର ସର୍ବବିଧ ଉନ୍ନତି, ସର୍ବାଙ୍ଗୀନ ବିକାଶର ଯୋଜନା ପ୍ରସ୍ତୁତ କରାଗଲା । କିନ୍ତୁ ସବୁ ଯୋଜନାର ମୁଣ୍ଡ ଉପରେ ବୋଝଟିଏ ହୋଇ ଲଦି ହୋଇରହିଲା ଦେଶର କ୍ରବବର୍ଦ୍ଧିଷ୍ଣୁ ଜନସଂଖ୍ୟା । ଦେଶର ଚିନ୍ତାଶୀଳ ବ୍ୟକ୍ତିମାନେ ଅନୁଭବ କଲେ ସକଳ ବିକାଶ ପଥରେ ବାଡ଼ଟିଏ ହୋଇ ଠିଆ ହେଉଛି ଆମର ଏଇ ବର୍ଦ୍ଧିଷ୍ଣୁ ଜନସଂଖ୍ୟା । ବିକାଶର ବାଧକଟିଏ ଇଏ । ଏଣେ ବିକାଶ ପଥରେ ଆଗେଇବା ସଂଗେ ସଂଗେ ଜନସଂଖ୍ୟାର ଏ ବୋଝଟିକୁ ମଧ୍ୟ ସମ୍ଭାଳିବାକୁ ପଡ଼ିବ । ସେ ବୋଝ ଉଣ୍ଶ୍ୱାସ କରିବାର ସାମ୍ଭାବ୍ୟ ବାଟଟିମାନ ଖୋଜି ଖୋଜି 1952 ମସିହାରେ ଶେଷରେ ଜନ୍ମ ନିୟନ୍ତ୍ରଣ କାର୍ଯ୍ୟକ୍ରମ ଆରମ୍ଭ ହେଲା ।

ସରକାର କାର୍ଯ୍ୟକ୍ରମର ଯୋଜନା କରିବା, ଘୋଷଣା କରିବା ଓ ଆରମ୍ଭ କରିବା ଅଲଗା କଥା, କିନ୍ତୁ କାର୍ଯ୍ୟକ୍ରମ ଅସଲ ରୂପରେ କାର୍ଯ୍ୟକାରୀ ହେବା ଅଲଗା କଥା । ସରକାରୀ କାର୍ଯ୍ୟକ୍ରମ ଲୋକମାନଙ୍କ ପାଖରେ ଠିକ୍

ରୂପରେ ପହଞ୍ଚିବା ଏକ କଷ୍ଟକର ବ୍ୟାପାର । ଯଦି ବି ପହଞ୍ଚିଲା ତଥାପି ଲୋକେ ତାକୁ ଯଦି ଗ୍ରହଣ ନକଲେ ତେବେ କାର୍ଯ୍ୟକ୍ରମର ଅର୍ଥ କିଛି ରହିବ ନାହିଁ । ଏଣୁ କାର୍ଯ୍ୟକ୍ରମ ଲୋକମାନଙ୍କ ପାଖରେ ପହଞ୍ଚିବା ପରିବର୍ତ୍ତେ ଲୋକେ ଯଦି କାର୍ଯ୍ୟକ୍ରମ ପାଖରେ ପହଞ୍ଚିବେ ତେବେ ଯାଇ ସଫଳତା ମିଳିଲା ବୋଲି ଜାଣିବାକୁ ହେବ । ଏଇସବୁ କଥାକୁ ବିଚାରକୁ ନେଇ ବହୁ ପରୀକ୍ଷା ନିରୀକ୍ଷା ମାଧ୍ୟମରେ ଦେଶରେ ଜନସଂଖ୍ୟା ନୀତି କାର୍ଯ୍ୟକାରୀ କରାଗଲା । ଜନ୍ମ, ମୃତ୍ୟୁ, ଜନସଂଖ୍ୟାବୃଦ୍ଧି ଇତ୍ୟାଦି ବିଭିନ୍ନ ଦିଗକୁ ବିଚାର କରାଯାଇ ଜନସଂଖ୍ୟା ନିୟନ୍ତ୍ରଣରେ ଶିକ୍ଷାର ଭୂମିକାକୁ ଉପଲବ୍ଧି କରାଗଲା । ବିଶେଷତଃ ନବବିବାହିତ ଦମ୍ପତ୍ତି, ନୂଆ ହୋଇ ବାପମା ହୋଇଥିବା ସ୍ୱାମୀ ସ୍ତ୍ରୀମାନଙ୍କୁ ଜନସଂଖ୍ୟା ବୃଦ୍ଧିର କାରଣ ଓ ପରିବାର କଲ୍ୟାଣ ଉପାୟମାନ ସମ୍ପର୍କରେ ଧାରଣା ଦିଆଯିବା ଲକ୍ଷ୍ୟରେ "ସୂଚନା ଶିକ୍ଷା ଓ ସଂଞ୍ଚାର" (Information Education & Communication) ଭଳି ଏକ ନୂଆ ଧାରାର ଅୟମାରମ୍ଭ ହେଲା ଏବଂ କ୍ରମେ ଏଇଠୁ ଜନ୍ମ ନେଲା "ଜନସଂଖ୍ୟା ଶିକ୍ଷା" (Polulation Education)। ଏହା ହେଉଚି ଷାଠିଏ ଦଶକର ଶେଷ ଭାଗର ଘଟଣା ।

"ଜାତୀୟ ଜନସଂଖ୍ୟା ଶିକ୍ଷା ପ୍ରକଳ୍ପ" ବା "National Population Education Project" (NPEP) ୧୯୮୦ ମସିହା ଅପ୍ରେଲ୍ ମାସରୁ ବିଧିବଦ୍ଧ ଭାବେ ଆମ ଦେଶରେ କାର୍ଯ୍ୟକାରୀ ହେଲା । ପ୍ରଥମେ ଜନସଂଖ୍ୟାଶିକ୍ଷା ବିଦ୍ୟାଳୟ ଓ ଅଣଆନୁଷ୍ଠାନିକ ଶିକ୍ଷା କେନ୍ଦ୍ର ମାଧମରେ କାର୍ଯ୍ୟକାରୀ ହେଲା । ୧୯୮୬ ମସିହାରେ ଏହା ଉଚ୍ଚ ଶିକ୍ଷା ଓ ଗଣଶିକ୍ଷା ମାଧମରେ କାର୍ଯ୍ୟକାରୀ କରାଗଲା । ସ୍କୁଲ୍ ଓ ଅଣଆନୁଷ୍ଠାନିକ ଶିକ୍ଷାରେ ଜନସଂଖ୍ୟାର ପ୍ରୟୋଗ ଓ ପ୍ରସାର ଦାୟିତ୍ୱ କେନ୍ଦ୍ର ସ୍ତରରେ ଏନ୍.ସି.ଇ.ଆର୍.ଟି. ଏବଂ ରାଜ୍ୟ ସ୍ତରରେ ଏସ୍.ସି.ଇ.ଆର.ଟି. ନେଇଥିବା ସ୍ଥଳେ ଉଚ୍ଚ ଶିକ୍ଷା ପାଇଁ କେନ୍ଦ୍ର ସ୍ତରରେ ୟୁ.ଜି.ସି. ଏବଂ ରାଜ୍ୟ ସ୍ତରରେ ବିଶ୍ୱ ବିଦ୍ୟାଳୟମାନେ ନେଇଛନ୍ତି । ଆମର ଏଠାରେ "ଗଣଶିକ୍ଷାରେ ଜନସଂଖ୍ୟା ଶିକ୍ଷା" ମୁଖ୍ୟ ପ୍ରସଙ୍ଗ ହୋଇଥିବାରୁ ଆମେ ସେ ସମ୍ବନ୍ଧରେ ବିସ୍ତୃତ ଭାବେ ଆଲୋଚନା କରିବା ।

## ଗଣଶିକ୍ଷାରେ ଜନସଂଖ୍ୟା ଶିକ୍ଷା :

ପୂର୍ବରୁ କୁହାଯାଇଛି ୧୨୪୬ ମସିହାଠାରୁ ଗଣଶିକ୍ଷା ସହିତ ଜନସଂଖ୍ୟାକୁ ଯୋଡ଼ାଯାଇଛି ବୋଲି ଏବଂ ଏ ଯୋଡ଼ିବାର ମଧ୍ୟ ବହୁ ଯଥାର୍ଥତା ରହିଛି । ବର୍ତ୍ତମାନ କେନ୍ଦ୍ର ସ୍ତରରେ ଜାତୀୟ ସାକ୍ଷରତା ମିଶନ ଏବଂ ରାଜ୍ୟ ସ୍ତରରେ ରାଜ୍ୟ ସାକ୍ଷରତା ମିଶନ, ରାଜ୍ୟ ଗଣଶିକ୍ଷା ନିର୍ଦ୍ଦେଶାଳୟ ଏବଂ ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ରମାନେ ଗଣଶିକ୍ଷା ମାଧ୍ୟମରେ ଜନସଂଖ୍ୟା ଶିକ୍ଷାର ପ୍ରସାର ଦାୟିତ୍ୱ ନେଇଛନ୍ତି । ଓଡ଼ିଶା ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ରରେ ଖାସ୍ ଜନସଂଖ୍ୟା ଶିକ୍ଷା ପାଇଁ ଏକ ସ୍ୱତନ୍ତ୍ର ପ୍ରକୋଷ୍ଠ ଅଛି ଓ ଏଥିପାଇଁ ସ୍ୱତନ୍ତ୍ର କର୍ମଚାରୀ ମଧ୍ୟ ରହିଛନ୍ତି । ସବୁଠାରୁ ବଡ଼ କଥା ହେଉଛି ଜନସଂଖ୍ୟା ଶିକ୍ଷା ଦୃଷ୍ଟିରୁ ଆମ ରାଜ୍ୟ ଅନ୍ୟ ରାଜ୍ୟଠାରୁ ଆଗୁଆ; କାରଣ ୧୨୪୬ରୁ ଗଣଶିକ୍ଷା ମାଧ୍ୟମରେ ଜନସଂଖ୍ୟା ଶିକ୍ଷାକୁ କାର୍ଯ୍ୟକାରୀ କରାଗଲା ସତ କିନ୍ତୁ ଆଗୁଆ କାର୍ଯ୍ୟକ୍ରମ ଭାବେ (Pilot Project) ଆମ ରାଜ୍ୟରେ କେନ୍ଦ୍ରସରକାର ଏହାକୁ ୧୨୪୨ ମସିହାରୁ ଜନଶିକ୍ଷା ସାଧନ କେନ୍ଦ୍ର ଜରିଆରେ ଆରମ୍ଭ କରିଥିଲେ ।

## ଜନସଂଖ୍ୟା ଶିକ୍ଷାର ପ୍ରଥମ ପର୍ଯ୍ୟାୟ :

ଗଣଶିକ୍ଷା ମାଧ୍ୟମରେ ଜନସଂଖ୍ୟା ଶିକ୍ଷାର ପ୍ରଥମ ପର୍ଯ୍ୟାୟ ୧୨୪୬ରେ ଏକ 5 ବର୍ଷିଆ ଯୋଜନାକୁ ନେଇ ଆରମ୍ଭ ହୋଇଥିଲା । ଏହାର ମୁଖ୍ୟ ଉଦ୍ଦେଶ୍ୟ ଥିଲା -

(କ) ଗଣ ସାକ୍ଷରତା କାର୍ଯ୍ୟକ୍ରମରେ ଜନସଂଖ୍ୟା ଶିକ୍ଷାର ବାର୍ତ୍ତାକୁ ଉପଯୁକ୍ତ ପ୍ରଚାର ଓ ପ୍ରସାର କରାଇବା ।

(ଖ) ରାଜ୍ୟ ପ୍ରୌଢ଼ ଶିକ୍ଷା ନିର୍ଦ୍ଦେଶାଳୟ ଏବଂ ରାଜ୍ୟ ପ୍ରୌଢ଼ ଶିକ୍ଷା ସାଧନ କେନ୍ଦ୍ର ଗୁଡ଼ିକୁ ଜନସଂଖ୍ୟା ଶିକ୍ଷା ଦିଗରେ ଅଧିକ ସକ୍ରିୟ ଓ କାର୍ଯ୍ୟଦକ୍ଷ କରାଇବା ।

(ଗ) ଜନସଂଖ୍ୟା ଶିକ୍ଷା ପ୍ରସାର ପାଇଁ ରୀତିମତ ଅନୁଷ୍ଠାନମାନ ଗଢ଼ି କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରିବା ।

ସେତେବେବେଳେ 15ରୁ 35 ବର୍ଷ ବୟସ୍କ 30 ଜଣ ନିରକ୍ଷର ଲୋକଙ୍କ ପାଇଁ ଗୋଟିଏ ଲେଖାଏଁ ସାକ୍ଷରତା କେନ୍ଦ୍ର କାର୍ଯ୍ୟକରୁଥିଲା । ଏହି କେନ୍ଦ୍ରମାନଙ୍କରେ ସେମାନଙ୍କୁ ଲେଖିପଢ଼ି ଶିଖାଇବା ସହିତ ଜନସଂଖ୍ୟା ଶିକ୍ଷା ମଧ୍ୟ ଦିଆଯିବାର ବ୍ୟବସ୍ଥା କରାଯାଇଥିଲା ।

ଏଣୁ ମୋଟାମୋଟି ଭାବେ ଦେଖିବାକୁ ଗଲେ ଜନସଂଖ୍ୟା ଶିକ୍ଷାର ପ୍ରଥମ ପର୍ଯ୍ୟାୟରେ ଏହି କାର୍ଯ୍ୟକ୍ରମର ମୂଳଦୁଆ ପଡ଼ିଲା । ଏହି କାର୍ଯ୍ୟକ୍ରମକୁ ଚଳାଇବା ପାଇଁ ବିଭିନ୍ନ ସଂସ୍ଥା, ସଂଗଠନ, ପ୍ରଶାସନିକ ବ୍ୟବସ୍ଥା, ଶିକ୍ଷା ବ୍ୟବସ୍ଥାକୁ ଅଧିକ ସୁଦୃଢ଼ ଓ କାର୍ଯ୍ୟଦକ୍ଷ କରାଗଲା । ଆବଶ୍ୟକ ତାଲିମ୍‌ର ବ୍ୟବସ୍ଥା କରାଗଲା ଏବଂ ବହିପତ୍ର ମଧ୍ୟ ପ୍ରସ୍ତୁତ କରାଗଲା । ବିଭିନ୍ନ ଗଣମାଧ୍ୟମର ସାହାଯ୍ୟ ନେଇ ଲୋକଙ୍କୁ ବୁଝାଇବା ପାଇଁ ମଧ୍ୟ ଚେଷ୍ଟା କରାଗଲା ।

## ଜନସଂଖ୍ୟା ଶିକ୍ଷାର ଦ୍ୱିତୀୟ ପର୍ଯ୍ୟାୟ :

୧୯୮୬ ମସିହାରେ ଆମର ଜାତୀୟ ଶିକ୍ଷାନୀତି ପ୍ରଣୟନ କରାଗଲା । ଏହି ଶିକ୍ଷାନୀତି ଦ୍ୱାରାରେ ଶିକ୍ଷା ବ୍ୟବସ୍ଥା ବହୁତ କିଛି ବଦଳିଗଲା । ତା ସାଙ୍ଗରେ ସାକ୍ଷରତା କାର୍ଯ୍ୟକ୍ରମ ବି ବଦଳିଲା । ୧୯୮୪ରେ ଜାତୀୟ ସାକ୍ଷରତା ମିଶନ୍ ଆରମ୍ଭ ହେଲା ଓ ୧୯୨୧ରୁ ସମ୍ପୂର୍ଣ୍ଣ ସାକ୍ଷାରତା ଅଭିଯାନ ପାଇଁ ଜିଲ୍ଲା ସାକ୍ଷରତା କମିଟିମାନ ଗଠିତ ହେଲା ।

ଜନସଂଖ୍ୟା ବୃଦ୍ଧିର ଆହୁରି କେତେକ କାରଣ ସମୟ କ୍ରମେ ସ୍ପଷ୍ଟ ହୋଇ ଉଠିଲା । ଜିଲ୍ଲାମାନଙ୍କର ଜନସଂଖ୍ୟାରୁ ଦେଖାଗଲା ଜନ୍ମ ପରେ ପରେ ବହୁତ ପିଲା ମରିଯାଉଛନ୍ତି, ଯାହାକୁ କି ଅଧିକ ଶିଶୁ ମୃତ୍ୟୁହାର ବୋଲି କୁହାଯାଉଛି । ନାରୀ ଓ ପୁରୁଷଙ୍କ ସଂଖ୍ୟା ଭିତରେ ମଧ୍ୟ କ୍ରମେ ଅଧିକ ଫରକ ଦେଖା ଦେଉଛି । ପୁରୁଷଙ୍କ ସଂଖ୍ୟା ବଢୁଛି କିନ୍ତୁ ନାରୀଙ୍କ ସଂଖ୍ୟା କମୁଛି । ଏହା ଏକ ଗୁରୁତର ସମସ୍ୟା । କାରଣ ଖାଲି ପୁରୁଷଙ୍କୁ ନେଇ ସମାଜ ତିଷ୍ଠିବ ନାହିଁ । ନାରୀ ଓ ପୁରୁଷ ଉଭୟଙ୍କର ସମାନ ଭୂମିକା , ସମାନ କର୍ତ୍ତବ୍ୟ ଓ ସମାନ ଅବଦାନ ରହିଛି । ମା'ପେଟରୁ ଝିଅଟିଏ ଜନ୍ମ ହେବାକୁ ଯାଉଛି ବୋଲି ଆଧୁନିକ ବୈଜ୍ଞାନିକ ପଦ୍ଧତିରେ ଜାଣି ତାକୁ ସେଇଠୁ ଭ୍ରୁଣହତ୍ୟା କରି ଶେଷ କରି ଦେବା,

ଯଦି ବି ଜନ୍ମ ନେଲା ତା'ପ୍ରତି ପାତର ଅନ୍ତର କରି ଠିକ୍ ଯତ୍ନ ନ ନେବା ଆଦି କାରଣ ଯୋଗୁ ଝିଅ ସଂଖ୍ୟା କମିବାରେ ଲାଗିଛି । ଏଇ ଦୃଷ୍ଟିରୁ ନାରୀ ପୁରୁଷ ମଧ୍ୟରେ ସମାନତା କଥାଟା ଅଧିକ ଗୁରୁତ୍ୱପୂର୍ଣ୍ଣ ଅନୁଭୂତ ହେଲା । ତା' ସହିତ ଜନ୍ମହାର ଅଧିକ ହେବାର କାରଣ ଭାବେ ବିବାହର ହାରହାରି ବୟସ ଉପରେ ମଧ୍ୟ ଗୁରୁତ୍ୱ ଦିଆଗଲା ।

ଜନସଂଖ୍ୟା ଶିକ୍ଷା ସମ୍ବନ୍ଧୀୟ ଗବେଷଣା ଓ ଅଙ୍ଗେ ନିଭେଇବା ଅନୁଭୂତିକୁ ନେଇ ଜନସଂଖ୍ୟା ବୃଦ୍ଧି ଓ ନିୟନ୍ତ୍ରଣର ବିଭିନ୍ନ ଦିଗ କ୍ରମେ ସ୍ପଷ୍ଟରୁ ସ୍ପଷ୍ଟତର ହୋଇ ଉଠିଲା । କେବଳ ଜନ୍ମ କରିଦେଲେ ମଣିଷର କର୍ତ୍ତବ୍ୟ ସରିଗଲା କି ? ଛୁଆଙ୍କୁ ମଣିଷପରି ମଣିଷ କରି ଜୀବନଟାକୁ ଜୀବନ ଭଳି ବଞ୍ଚିବା, ମଣିଷ ଭଳି ବଞ୍ଚିବା ବଡ଼କଥା । ଏଣୁ ଗୁଣାତ୍ମକ ଜୀବନ ଉପରେ ଗୁରୁତ୍ୱ ଦିଆଗଲା ।

ମାଦକ ଦ୍ରବ୍ୟର ବ୍ୟବହାର, ସଂକ୍ରାମକ ଯୌନରୋଗ ଏବଂ ଏଡ୍ସ୍ ଆଦି ଅନ୍ୟାନ୍ୟ ଆନୁସଙ୍ଗିକ ବିଷୟକୁ ମଧ୍ୟ ଜନସଂଖ୍ୟା ଶିକ୍ଷାର ପରିସରଭୁକ୍ତ କରାଗଲା ।

ପ୍ରଥମ ପର୍ଯ୍ୟାୟ କାର୍ଯ୍ୟକ୍ରମ ପରେ ୧୨୨ରୁ ଦ୍ୱିତୀୟ ପର୍ଯ୍ୟାୟ କାର୍ଯ୍ୟକ୍ରମ ଆରମ୍ଭ ହେବା କଥା, କିନ୍ତୁ କାର୍ଯ୍ୟକ୍ରମ ମୂଲ୍ୟାୟନରେ ବିଳମ୍ବ ହେତୁ ୧୨୨୪ରୁ ଦ୍ୱିତୀୟ ପର୍ଯ୍ୟାୟ କାର୍ଯ୍ୟ ଆରମ୍ଭ କରାଗଲା । ଜନସଂଖ୍ୟା ଶିକ୍ଷା ପାଇଁ ଅର୍ଥ ଯୋଗାଉଥିବା ଆନ୍ତର୍ଜାତୀୟ ଜନସଂଖ୍ୟା ନିୟନ୍ତ୍ରଣ ଆର୍ଥିକ ସହାୟତା ସଂସ୍ଥା(UNFPA) ର ବିଶେଷଜ୍ଞ କର୍ମକର୍ତ୍ତାମାନେ ପ୍ରଥମ ପର୍ଯ୍ୟାୟ ଶେଷ ପରେ ଭାରତ ଭ୍ରମଣରେ ଆସି କାର୍ଯ୍ୟକ୍ରମର ସମୀକ୍ଷା ଓ ଅନୁଧ୍ୟାନ କରିଥିଲେ । ହିମାଚଳ ପ୍ରଦେଶ, ରାଜସ୍ଥାନ ଓ ମହାରାଷ୍ଟ୍ରରେ ପରିବାର କଲ୍ୟାଣ ମନ୍ତ୍ରଣାଳୟ ପକ୍ଷରୁ ମଧ୍ୟ ଜନସଂଖ୍ୟା ଶିକ୍ଷା ପାଇଁ ସ୍ୱତନ୍ତ୍ର କାର୍ଯ୍ୟକ୍ରମମାନ ଗ୍ରହଣ କରାଯାଇଥିଲା । ବିଶେଷଜ୍ଞଙ୍କ ମତ ଓ ଉପରୋକ୍ତ ତିନିଟି ରାଜ୍ୟର ଅନୁଭୂତିକୁ ନେଇ ଦ୍ୱିତୀୟ ପର୍ଯ୍ୟାୟର କାର୍ଯ୍ୟକ୍ରମ ଆରମ୍ଭ କରାଗଲା । ଯେଉଁ ଜିଲ୍ଲାମାନଙ୍କରେ ଶିଶୁ ମୃତ୍ୟୁହାର ଅଧିକ, ଆନୁପାତିକ ଭାବେ ପୁରୁଷ ସଂଖ୍ୟାଠାରୁ ନାରୀଙ୍କ ସଂଖ୍ୟା କମ୍, ଶିଶୁ ଜନ୍ମହାର ଅଧିକ ଏବଂ ଅଳ୍ପ ବୟସରେ ବିବାହ ଦିଆଯାଉଛି ସେମିତି ବଛା ବଛା ଜିଲ୍ଲାରେ ପ୍ରଥମ କରି କେନ୍ଦ୍ର ପରିବାର କଲ୍ୟାଣ ମନ୍ତ୍ରଣାଳୟ ବ୍ୟାପକ କାର୍ଯ୍ୟକ୍ରମ ଆରମ୍ଭ କଲେ ।

ସମ୍ପୂର୍ଣ୍ଣ ସାକ୍ଷରତା ଅଭିଯାନ କାର୍ଯ୍ୟକ୍ରମ ହେଉଥିବା 400 ଜିଲ୍ଲାରେ ଜନସଂଖ୍ୟା ଶିକ୍ଷା କାର୍ଯ୍ୟକ୍ରମର ଏହି ଦ୍ୱିତୀୟ ପର୍ଯ୍ୟାୟ କାର୍ଯ୍ୟକ୍ରମକୁ ସାମିଲ୍ କରାଯାଇଥିଲା । ଏହି ଦ୍ୱିତୀୟ ପର୍ଯ୍ୟାୟରେ ଅନ୍ୟୁନ୍ 140 ନିୟୁତ ବୟସ୍କ ନିରକ୍ଷର ଓ ନବସାକ୍ଷରଙ୍କ ପାଖରେ ଅନ୍ତତଃ ଅନ୍ତେ ବହୁତେ ଜନସଂଖ୍ୟା ଶିକ୍ଷାର ବାର୍ତ୍ତା ପହଞ୍ଚି ପାରିଛି ଏବଂ ଏଇମାନଙ୍କ ଭିତରୁ ଶତକଡ଼ା 62ଭାଗ ହେଉଛନ୍ତି ନାରୀ ।

## ଜନସଂଖ୍ୟା ଶିକ୍ଷାର ତୃତୀୟ ପର୍ଯ୍ୟାୟ :

ଜନସଂଖ୍ୟା ବିସ୍ଫୋରଣର ଦାଉରୁ ସମଗ୍ର ମାନବ ସଭ୍ୟତାକୁ ରକ୍ଷା କରିବାପାଇଁ ପୃଥିବୀର ଚିନ୍ତାଶୀଳ ବ୍ୟକ୍ତିମାନେ ବିଭିନ୍ନ ସାମ୍ଭାବ୍ୟ ସମାଧାନର ବାଟମାନ ଖୋଜିବାରେ ଏବେ ବ୍ୟସ୍ତ ରହିଛନ୍ତି । ଏଥିପାଇଁ ଆନ୍ତର୍ଜାତୀୟ ସ୍ତରରେ ବିଭିନ୍ନ ସଭା, ସମ୍ମିଳନୀ, ଆଲୋଚନାଚକ୍ରର ଆୟୋଜନ ହେଉଛି । 1974 ମସିହାରେ ବୁଖାରେଷ୍ଟଠାରେ ଆୟୋଜିତ ହୋଇଥିଲା "ବିଶ୍ୱ ଜନସଂଖ୍ୟା ସମ୍ମିଳନୀ" (World Population Conference - Bucharest, 1974)। ଉନ୍ନତ ରାଷ୍ଟ୍ରମାନେ ପରିବାର କଲ୍ୟାଣ ଜନସଂଖ୍ୟା ନିୟନ୍ତ୍ରଣର ଏକମାତ୍ର ପନ୍ଥା ବୋଲି କହୁଥିବା ବେଳେ ଭାରତର ଯୁକ୍ତି ଥିଲା "ବିକାଶ ହିଁ ସର୍ବଶ୍ରେଷ୍ଠ ଜନ୍ମନିରୋଧକ" (Development is the best Contraceptive)। ଭାରତର ଯୁକ୍ତି ସହିତ ବହୁ ବିକାଶଶୀଳ ରାଷ୍ଟ୍ର ସହମତ ହୋଇଥିଲେ । ପ୍ରକୃତରେ ସାମାଜିକ ଓ ଅର୍ଥନୈତିକ ପ୍ରଗତି ବଳରେ ହିଁ ଆମେ ଜନସଂଖ୍ୟାର ସମସ୍ୟାକୁ ସମାଧାନ କରି ପାରିବା ।

ଏକଥାକୁ ସ୍ପଷ୍ଟ କରିବାକୁ ଉଦାହରଣଟିଏ ନିଆଯାଇପାରେ – ଜଣେ ଯଦି 5ଟି ପିଲା ଜନ୍ମ କରି ସେମାନଙ୍କୁ ଭଲ ଖାଇବା, ପିଇବା ଦେଇ ତାଙ୍କର ସ୍ୱାସ୍ଥ୍ୟ, ଶିକ୍ଷାର ବ୍ୟବସ୍ଥା କରି ପାରିଲା ଏବଂ ଅନ୍ୟ ପକ୍ଷରେ କିନ୍ତୁ ଜଣେ ଯଦି ଗୋଟିଏ ପିଲା ଜନ୍ମ କରି ତାକୁ ଖାଇବାକୁ ଗଣ୍ଡାଏ ଦେଇ ପାରିଲାନି, ତା ଦେହମୁଣ୍ଡ ପାଇଁ ଔଷଧ ବ୍ୟବସ୍ଥା କରି ପାରିଲାନି, ତାକୁ ପାଠ ପଢ଼େଇ ପାରିଲାନି , ତେବେ ଆମେ ଗୋଟିଏ ବା ଦୁଇଟି ସନ୍ତାନ ଭଲ ବୋଲି ଯୁକ୍ତି କରିବା ବା ସ୍ଲୋଗାନ ଦେବାର ଯଥାର୍ଥତା ରହିଲା ତେବେ କେଉଁଠି ?

ଏଣୁ ବର୍ତ୍ତମାନ ପରିପ୍ରେକ୍ଷୀରେ "ସଂଖ୍ୟା"ଟା କେବଳ ବଡ଼ କଥା ନୁହେଁ । ଯେତେ ସଂଖ୍ୟାରେ ଜନ୍ମ ହୁଅନ୍ତୁ ନା କାହିଁକି ଯଦି ସେମାନଙ୍କୁ ଖାଇବା, ପିଇବା, ରହିବା ଆଦି ସକଳ ସୁବିଧା ସୁଯୋଗ ଆମେ ଯୋଗାଇ ଦେଇ ମଣିଷ ଭଳି ସୁଖରେ ବଞ୍ଚିବାର ବ୍ୟବସ୍ଥା କରି ପାରନ୍ତେ ତେବେ ସଂଖ୍ୟା ଆମ ପାଇଁ ସମସ୍ୟା ହୁଅନ୍ତା ନାହିଁ । ଏଣୁ ସମସ୍ୟାଟା ହଉଛି ଆମର ଅଭାବ, ଆମର ଦାରିଦ୍ର୍ୟ । ଏଣୁ ଜନସଂଖ୍ୟା ଶିକ୍ଷାକୁ ତୃତୀୟ ପର୍ଯ୍ୟାୟରେ ଏକ ଭିନ୍ନ ଦୃଷ୍ଟି କୋଣରୁ ଦେଖାଯାଉଛି ଏବଂ ଏହାର ଆଭିମୁଖ୍ୟ ବଦଳି ଯାଉଛି ମଧ୍ୟ ।

ପିଲାଟି ଜନ୍ମ ହେଲେ ଆମେ କହିବା ଆଉରି ଗୋଟିଏ ପେଟ ବଢ଼ିଲା ପୋଷିବା ପାଇଁ, କିନ୍ତୁ ଅନ୍ୟ କେହି ହୁଏତ ଅନ୍ୟଦୃଷ୍ଟିରୁ କହିପାରେ ଆଉରି ଦିଟା ହା'ତ ବଢ଼ିଲା କାମ କରିବା ପାଇଁ । ଏଠାରେ ଦୁଇଟା ଯାକ ଯୁକ୍ତିର ଏକମାତ୍ର ସମାଧାନ ହେଉଚି ଆମର ପ୍ରଗତି, ଆମର ଉନ୍ନତି, ଆମର ବିକାଶ ।

୧୨୮୪ ମସିହାରେ ମେକ୍ସିକୋଠାରେ ହୋଇଥିବା ବିଶ୍ୱ ଜନସଂଖ୍ୟା ସମ୍ମିଳନୀରେ ତଥାପି ମଧ୍ୟ ପରିବାର କଲ୍ୟାଣ ଉପରେ ଗୁରୁତ୍ୱ ଦିଆଯାଇଥିଲା । କେବଳ ନାରୀଶକ୍ତିର ସର୍ବାଙ୍ଗୀନ ବିକାଶ ଓ ସ୍ୱାସ୍ଥ୍ୟଗତ ଦିଗପ୍ରତି ଗୁରୁତ୍ୱ ଦିଆଯାଉଥିଲା ।

୧୨୨୪ରେ କାଇରୋଠାରେ ଜନସଂଖ୍ୟା ଓ ବିକାଶ ଶୀର୍ଷକ ଏକ ଆନ୍ତର୍ଜାତୀୟ ସମ୍ମିଳନୀ ଆୟୋଜିତ ହେଲା । ବିଶ୍ୱ ଜନସଂଖ୍ୟା ଶିକ୍ଷା କ୍ଷେତ୍ରରେ ଏହା ଏକ ନୂତନ ଦିଗର ସୂଚନା ଦେଲା । ଜନସଂଖ୍ୟା ଓ ବିକାଶ ମଧ୍ୟରେ ଥିବା ପରସ୍ପର ନିର୍ଭରଶୀଳତାକୁ ଏହା ସ୍ପଷ୍ଟଭାବେ ଅନୁଧ୍ୟାନ କଲା ଓ ସ୍ୱୀକାର କଲା । ଖାଲି ଜନ୍ମହାର, ମୃତ୍ୟୁହାର, ଜନସଂଖ୍ୟା, ଜନଗଣନା ଇତ୍ୟାଦି ବିଷୟରେ ସୀମିତ ନ ରହି, ଏହା ପ୍ରତ୍ୟେକ ନାରୀ ବା ପୁରୁଷର ବ୍ୟକ୍ତିଗତ ଆବଶ୍ୟକତା, ତା'ର ସ୍ୱାସ୍ଥ୍ୟ, ଖାଦ୍ୟ, ସାମାଜିକ, ଆର୍ଥନୈତିକ ସମସ୍ୟା ଆଦି ଉପରେ ଗୁରୁତ୍ୱ ଦେଲା । ମଣିଷର ଜୀବନ ଧାରଣର ମାନ ଉନ୍ନତି ପାଇଁ ଏହି ସମ୍ମିଳନୀରେ ଅଧିକ ଗୁରୁତ୍ୱ ଦିଆଗଲା । ବିଶେଷ କରି ଜଣେ ସ୍ତ୍ରୀଲୋକର ସବୁପ୍ରକାର ବିକାଶ ପ୍ରତି ଦୃଷ୍ଟି ରଖି ତା'କୁ ପୁରୁଷ ସହ ସମକକ୍ଷ କରିବାକୁ ଲକ୍ଷ୍ୟ ରଖାଗଲା ।

ଏଣୁ ଏହି ତୃତୀୟ ପର୍ଯ୍ୟାୟର ଲକ୍ଷ୍ୟ ହେଉଛି ଆମ ଦେଶର ନବମ

ପଞ୍ଚବାର୍ଷିକ ଯୋଜନା କାଳରେ କାର୍ଯ୍ୟକାରୀ ହେଉଥିବା ସାକ୍ଷରତା ପରବର୍ତ୍ତୀ ତଥା ନିରନ୍ତର ଶିକ୍ଷା କାର୍ଯ୍ୟକ୍ରମ ଜରିଆରେ ଜନସଂଖ୍ୟା ଶିକ୍ଷାକୁ ଅଧିକ ପ୍ରସାର କରିବା । ନିରନ୍ତର ଶିକ୍ଷା କେନ୍ଦ୍ର ସହିତ ଜନସଂଖ୍ୟା ଶିକ୍ଷାକୁ ଏକ ଅନୁଷ୍ଠାନ ଭାବେ ଗଢ଼ିତୋଳିବାକୁ ହେବ । ନାରୀ ପୁରୁଷ ମଧ୍ୟରେ ସମାନତା, ନାରୀମାନଙ୍କୁ ସମାଜର ସବୁକ୍ଷେତ୍ରରେ ନିଯୁକ୍ତି, ପଦମର୍ଯ୍ୟାଦା, ଶିକ୍ଷା, ସମ୍ମାନ ପ୍ରଦାନ, ପିଲା ଜନ୍ମ କରିବା ସମ୍ବନ୍ଧୀୟ ସମସ୍ତ ଶିକ୍ଷା, ବିଶେଷକରି ସ୍ୱାସ୍ଥ୍ୟ ଶିକ୍ଷା, ମା' ହେବାର ଅଧିକାର, କିଶୋର ବୟସରୁ ନିଜର ଭବିଷ୍ୟତ, ଯୌନଜୀବନର ଦାୟିତ୍ୱ, କର୍ତ୍ତବ୍ୟ, ଭଲମନ୍ଦ ବିଷୟରେ ଜାଣିବା ତଥା, କିଶୋର ଜୀବନରେ ନିଜର ଶାରୀରିକ ଓ ମାନସିକ ପରିବର୍ତ୍ତନ ସହିତ ଯୌନ ଜୀବନର ସଂପର୍କ ଇତ୍ୟାଦି ବିଷୟରେ ସଚେତନ କରାଇବା ଆଦି ଉପରେ ଏହି ପର୍ଯ୍ୟାୟରେ ଅଧିକ ଧ୍ୟାନ ଦିଆଯିବ । ଜୀବନକୁ ସୁଖ ସ୍ୱଚ୍ଛନ୍ଦରେ ଗଢ଼ିତୋଳିବା ଓ ଚଳାଇବା ପାଇଁ ଆବଶ୍ୟକ ଶିକ୍ଷାପ୍ରତି ମଧ୍ୟ ଗୁରୁତ୍ୱ ଦିଆଯାଇଛି ।

ଏହି ତୃତୀୟ ପର୍ଯ୍ୟାୟର ସବୁଠାରୁ ବଡ଼କଥା ହେଉଛି ଭଲରେ ବଞ୍ଚି ରହିବା ପାଇଁ ସର୍ବାଙ୍ଗୀନ ବିକାଶର ଧାରାକୁ ଅବ୍ୟାହତ ରଖିବା । ଭଲରେ ରହିବାକୁ ହେଲେ ଆମର ଭଲ ସ୍ୱାସ୍ଥ୍ୟ ଦରକାର, ଶିକ୍ଷା ଦରକାର, ପ୍ରଦୂଷଣମୁକ୍ତ ପରିବେଶ ଦରକାର, ପୁଷ୍ଟିକର ଖାଦ୍ୟ ଦରକାର, ପରିଷ୍କାର ପିଇବା ପାଣି ଦରକାର, ରହିବା ପାଇଁ ଜାଗା ଓ ମୁକ୍ତ ପରିବେଶ ଦରକାର । ତା' ସାଙ୍ଗକୁ ଅର୍ଥନୈତିକ ସ୍ୱଚ୍ଛଳତା, ସାମାଜିକ ଶାନ୍ତିଶୃଙ୍ଖଳା, ସାଂସ୍କୃତିକ ସଂହତି ଦରକାର । ଭଲରେ ରହିବାକୁ ହେଲେ ନିଶ୍ଚିତ ଭାବେ ଆମ ପରିବାରଟି ଛୋଟ ହେବା ଦରକାର । ଏକଥା ମଧ୍ୟ ଏଥିରୁ ଆପେ ଆପେ ସ୍ପଷ୍ଟ ହୋଇପଡୁଛି ।

ଏଣୁ ଜନସଂଖ୍ୟା ଶିକ୍ଷା କହିଲେ ଜନସାଧାରଣଙ୍କୁ ଉପରୋକ୍ତ ସମସ୍ତ ବିଷୟରେ ଟିକିନିଖିଭାବେ କହି ବୁଝେଇ ସଚେତନ କରାଇବାକୁ ପଡ଼ିବ । ଲୋକେ ସଚେତନ ହେଲେ ଗୋଟିଏ ପଟେ ଜନସଂଖ୍ୟା ବୃଦ୍ଧି ବ୍ୟାହତ ହେବା ସଂଗେ ସଂଗେ ବିକାଶର ଧାରା ଅବ୍ୟାହତ ରହିବ ଏବଂ ଜନସଂଖ୍ୟା ଶିକ୍ଷାର ଅସଲ ଲକ୍ଷ୍ୟ ସାଧିତ ହେବ ।



# ଜନସଂଖ୍ୟା ଶିକ୍ଷାର ନୂତନ ଆଭିମୁଖ୍ୟ

ଡକ୍ଟର ଦିଗରାଜ ବ୍ରହ୍ମା

## ଜନସଂଖ୍ୟା ଓ ନିରବଚ୍ଛିନ୍ନ ବିକାଶ

କ୍ରମବର୍ଦ୍ଧିଷ୍ଣୁ ଜନସଂଖ୍ୟା, ପରିବେଶର ପ୍ରଦୂଷଣ, ଉପଯୁକ୍ତ ଶିକ୍ଷା ଓ ସଚେତନତା ଆଦିର ଅଭାବରୁ ପୃଥିବୀର ସ୍ଥିତି କ୍ରମଶଃ ସଂକଟମୟ ହୋଇଉଠୁଛି । ସରକାରୀ ଓ ଅର୍ଦ୍ଧସରକାରୀ ସ୍ତରରେ ବହୁ ପ୍ରଚେଷ୍ଟା ସତ୍ତ୍ୱେ ପୃଥିବୀର ଜନସଂଖ୍ୟା କ୍ଷେତ୍ରରେ ସ୍ଥିରତା ଅଣାଯାଇ ପାରୁନି । ଅନ୍ୟପକ୍ଷରେ ଅବିଚାରିତ ଭାବେ ପ୍ରାକୃତିକ ସମ୍ପଦ ଗୁଡିକର କ୍ଷୟ ଏପରି ଘଟୁଛି ଯେ ଭବିଷ୍ୟତ ବଂଶଧରମାନଙ୍କ ଉପଯୋଗ ପାଇଁ କିଛି ସମ୍ବଳ ରହିବା ଅସମ୍ଭବ ମନେ ହେଉଛି ।

ଉପରୋକ୍ତ ସମସ୍ୟାକୁ ବିଚାରକୁ ନେଇ କାଇରୋ ସମ୍ମିଳନୀ (୧୨୨୪)ରେ ଜନସଂଖ୍ୟା ଓ ନିରବଚ୍ଛିନ୍ନ ବିକାଶ ସଂପର୍କରେ ବିଚାର ବିମର୍ଶ ହୋଇଥିଲା ଓ ସେ ଦିଗରେ କେତେକ କାର୍ଯ୍ୟକ୍ରମ ଗ୍ରହଣ କରିବାକୁ ସେଠାରେ ଉପସ୍ଥିତ ରାଷ୍ଟ୍ର ସମୂହକୁ କୁହାଯାଇଥିଲା ।

**ଲକ୍ଷ୍ୟ :**

1. ନିରବଚ୍ଛିନ୍ନ ବିକାଶ କ'ଣ ? ସେ ସମ୍ପର୍କରେ ସମସ୍ତେ ବୁଝିବାକୁ କ୍ଷମ ହେବେ ।

2. ନିରବଚ୍ଛିନ୍ନ ବିକାଶ ସଂପର୍କୀୟ ଲକ୍ଷ୍ୟ ହାସଲ ଦିଗରେ ସମସ୍ତେ ସହାୟକ ହେବେ ।

3. ଏଥି ସହିତ ସଂପୃକ୍ତ କାର୍ଯ୍ୟକ୍ରମରେ ସାମିଲ ହେବେ ।

## ନିରବଚ୍ଛିନ୍ନ ବିକାଶ କହିଲେ କ'ଣ ବୁଝାଏ ?

ଲୋକସଂଖ୍ୟା ବଢ଼ିବା ସଂଗେ ସଂଗେ ଯଦି ଆମର ଖାଦ୍ୟ, ବସ୍ତ୍ର, ବାସଗୃହ ଆଦି ସମାନୁପାତିକ ହାରରେ ବଢ଼ି ବଢ଼ି ଚାଲୁଥାନ୍ତା, ଆମର ପ୍ରାକୃତିକ ସମ୍ପଦ ଓ ସମ୍ବଳ ଯଦି ବଢ଼ି ବଢ଼ି ଚାଲୁଥାନ୍ତା, ତେବେ ଲୋକସଂଖ୍ୟା ବୃଦ୍ଧିଟା ଆମ ପାଇଁ ସମସ୍ୟା ହୋଇ ଦେଖା ଦେଇନଥାନ୍ତା ଏବଂ ଜନସଂଖ୍ୟା ନିୟନ୍ତ୍ରଣ କଥା ଆମ ମୁଣ୍ଡକୁ ବି ଆସିନଥାନ୍ତା । ଏଣୁ ଜନସଂଖ୍ୟା ବୃଦ୍ଧି ଓ ବିକାଶରଧାରା ପରସ୍ପର ନିର୍ଭରଶୀଳ । ବିକଶିତ ରାଷ୍ଟ୍ରରେ ଜନସଂଖ୍ୟା ବୃଦ୍ଧିର ସମସ୍ୟା ବିକାଶଶୀଳ ରାଷ୍ଟ୍ରର ଜନସଂଖ୍ୟା ବୃଦ୍ଧି ସମସ୍ୟାଠାରୁ ତୁଳନାତ୍ମକ ଭାବେ କମ୍ । ଆମର ଜନସଂଖ୍ୟା ବଢ଼ୁଛି ବୋଲି ଆମେ ଶିଳ୍ପ ବିକାଶ ନାଆଁରେ ଜଙ୍ଗଲସଫା କରି ସହର ଓ ଶିଳ୍ପାଞ୍ଚଳ ଗଢ଼ି ପକାଉଛୁ କିନ୍ତୁ ଅନ୍ୟପଟେ ଜଙ୍ଗଲ ଲୋପର ପ୍ରଭାବ ପ୍ରକୃତି ଉପରେ ପଡୁଛି । ଏଣୁ ବିକାଶ ଅର୍ଥ ବିନାଶ ନୁହେଁ ଏବଂ ବିକାଶ ନାଆଁରେ ଆମେ ବର୍ତ୍ତମାନ ସବୁ ଖାଇ ଉଡ଼େଇ ଦବୁ, ଆଉ ଆମର ଭବିଷ୍ୟତ ବଂଶଧରମାନେ ଶୂନ୍ୟକୁ ଚାହିଁ ଆଁ କରିଥିବେ, ଏହାକୁ ବି ଆମେ ବିକାଶ କହିବା ନାହିଁ । ବିକାଶର ଧାରା ସବୁବେଳେ ନିରବଚ୍ଛିନ୍ନ ।ଏହାର ଶେଷ ନାହିଁ । ଗୋଟିଏ କ୍ଷେତ୍ରରେ ବିକାଶ ଅନ୍ୟ କ୍ଷେତ୍ରରେ ବିକାଶକୁ ଗୁଣାତ୍ମକ ଭାବେ ପ୍ରଭାବିତ କରିବ । ନିରବଚ୍ଛିନ୍ନ ବିକାଶ ଆମର ଅର୍ଥନୈତିକ ଅବସ୍ଥାର ଉନ୍ନତି କରିବା ସଂଗେ ସଂଗେ ପ୍ରାକୃତିକ ପରିବେଶ ଓ ସମ୍ବଳର ମଧ୍ୟ ସୁରକ୍ଷା କରିବା ବାଞ୍ଛନୀୟ ।

ଦୀର୍ଘ ଦିନ ଧରି ଚାଲୁଥିବା ନିରବଚ୍ଛିନ୍ନ ବିକାଶ ମୂଳକ କାର୍ଯ୍ୟକ୍ରମ ଦାରିଦ୍ର୍ୟର ବିଲୋପ ସାଧନ ସହିତ ଜନସଂଖ୍ୟା ବୃଦ୍ଧି ହାର କ୍ରମଶଃ କମ୍ କରିଥାଏ । ଏହା ଫଳରେ ଶୀଘ୍ର ଜନସଂଖ୍ୟାର ସ୍ଥିରତା ଆଣିବା ସମ୍ଭବପର ହୋଇଥାଏ ।

ଗରିବମାନଙ୍କ ମଧ୍ୟରେ ମହିଳାମାନେ ଅଧିକ ଅବହେଳିତ ଅବସ୍ଥାରେ ଥାଆନ୍ତି । ପୁରୁଷମାନଙ୍କ ଅପେକ୍ଷା ସେମାନଙ୍କର ସାମାଜିକ ଓ ଅର୍ଥନୈତିକ ସ୍ଥିତି ଖୁବ୍ ଦୁର୍ବଳ । ସେମାନଙ୍କ ପ୍ରତି ଅନୁସୃତ ଭେଦଭାବର ବିଲୋପ ସାଧନ କରିବା ଦ୍ୱାରା ଦାରିଦ୍ର୍ୟ, ଅଭାବ, ଅନାଟନ ରହିବ ନାହିଁ । କ୍ରମଶଃ ପରିବାର କଲ୍ୟାଣ କାର୍ଯ୍ୟକ୍ରମ ଓ ପରିବାର ନିୟୋଜନ କାର୍ଯ୍ୟକ୍ରମକୁ ଅଧିକ ଗୁଣାତ୍ମକ କରିହେବ । ପ୍ରଜନନ ସ୍ୱାସ୍ଥ୍ୟ ସମ୍ପର୍କୀୟ କାର୍ଯ୍ୟକ୍ରମ ଯୋଗାଇ ଦିଆଯାଇ ପାରିବ ।

ଭବିଷ୍ୟତ ବଂଶଧରମାନଙ୍କ ଚାହିଦାକୁ ଆଖି ଆଗରେ ରଖି ଆମର ଗଚ୍ଛିତ ପ୍ରାକୃତିକ ସଂପଦ ଓ ସମ୍ବଳକୁ ବ୍ୟବହାର କରିବା ଓ ପରିବେଶର ଯଥାସାଧ୍ୟ ଉପଯୋଗ କରିବା ସଂପ୍ରତି ବିଶ୍ୱର ପ୍ରତ୍ୟେକ ନାଗରିକଙ୍କର କର୍ତ୍ତବ୍ୟ ହୋଇଛି । ସେଥିପାଇଁ ସମ୍ବଳର ଯୁକ୍ତିଯୁକ୍ତ ବ୍ୟବହାରର ଆବଶ୍ୟକତା ଦେଖାଦେଇଛି । ପୃଥିବୀକୁ ଏକ ପ୍ରଦୂଷଣ ମୁକ୍ତ ପୃଥିବୀରେ ପରିଣତ କରି ବିଶ୍ୱ ପରିବେଶକୁ ରକ୍ଷା ନକଲେ ମଣିଷ ସମାଜ ବଞ୍ଚିପାରିବ ନାହିଁ । ମଣିଷ ସମାଜ ତିଷ୍ଠି ରହିବା ପାଇଁ ବିକାଶର ଧାରାକୁ ଅବ୍ୟାହତ ରଖିବା ଏକାନ୍ତ ଆବଶ୍ୟକ ଓ ସେଥିପାଇଁ ସରକାରୀ ଅର୍ଦ୍ଧସରକାରୀ ଓ ଅନ୍ୟାନ୍ୟ ସଂସ୍ଥା ମାଧ୍ୟମରେ ବିଭିନ୍ନ କାର୍ଯ୍ୟ କରାଯିବା ମଧ୍ୟ ନିତାନ୍ତ ଜରୁରୀ ।

## ପ୍ରଶିକ୍ଷଣ ଭିତ୍ତିକ କାର୍ଯ୍ୟକ୍ରମ :

1. ଦାରିଦ୍ର୍ୟ କିପରି ସମୃଦ୍ଧି ଓ ବିକାଶ କ୍ଷେତ୍ରରେ ଅନ୍ତରାୟ ସୃଷ୍ଟି କରେ, ସେ ସମ୍ପର୍କରେ ପ୍ରଶିକ୍ଷାର୍ଥୀମାନଙ୍କ ସହିତ ଆଲୋଚନା ।
2. ବିକାଶ କ୍ଷେତ୍ରରେ ମହିଳାମାନଙ୍କ ଭୂମିକା କ'ଣ ହେବା ଉଚିତ ସେ ସମ୍ପର୍କରେ ଆଲୋଚନା ଓ ଭୂମିକା ଗୁଡ଼ିକର ରୂପରେଖ ପ୍ରସ୍ତୁତି ।
3. ଜନସଂଖ୍ୟା ଓ ବିକାଶ ଦୃଷ୍ଟିକୋଣରୁ ସରକାରଙ୍କ ଦ୍ୱାରା

ନିଆଯାଉଥିବା ବିଭିନ୍ନ କାର୍ଯ୍ୟକ୍ରମ ସଂପର୍କରେ ଆଲୋଚନା ।

4. ନିରବଚ୍ଛିନ୍ନ ବିକାଶ ନିମନ୍ତେ ବର୍ତ୍ତମାନ ସମାଜର ଭବିଷ୍ୟତ ବଂଶଧରଙ୍କ ପ୍ରତି ଥିବା କର୍ତ୍ତବ୍ୟ ସମ୍ପର୍କରେ ଆଲୋଚନା ।

## ପ୍ରଶିକ୍ଷଣ ପରବର୍ତ୍ତୀ କାର୍ଯ୍ୟକ୍ରମ :-

1. ଉଦ୍ଦିଷ୍ଟ ଦଳ ନିଜର ରୋଜଗାର ବୃଦ୍ଧି ଓ ଉପକାର ପାଇଲା ଭଳି ପ୍ରଶିକ୍ଷଣ କାର୍ଯ୍ୟକ୍ରମର ଆୟୋଜନ ।

   ଏହି ପ୍ରଶିକ୍ଷଣ କାର୍ଯ୍ୟକ୍ରମ ନିଜ ଅଞ୍ଚଳରେ ଲୋକମାନଙ୍କ ପାଇଁ ମିଳୁଥିବା ସମ୍ବଳର ଅନୁଧ୍ୟାନ କରି ଦିଆଯିବ । ସେମାନଙ୍କ ପ୍ରସ୍ତୁତ ସାମଗ୍ରୀ ଯେପରି ବଜାରରେ ବିକ୍ରୀ ହୋଇପାରିବ, ସେଥିପାଇଁ ମଧ୍ୟ ଏକ ଯୋଜନା ପ୍ରସ୍ତୁତ କରାଯିବ ।

2. ଲୋକମାନଙ୍କର, ବିଶେଷତଃ ମହିଳାମାନଙ୍କର ନିରକ୍ଷରତାର ବିଲୋପ ସାଧନ ପାଇଁ ସାକ୍ଷରତା କାର୍ଯ୍ୟକ୍ରମର ସହାୟତା ନିଆଯିବ ।

3. ଖାଦ୍ୟ ଉତ୍ପାଦନ, ଖାଦ୍ୟ ସଂରକ୍ଷଣ, ସ୍ୱାସ୍ଥ୍ୟ ସମ୍ପର୍କୀୟ କାର୍ଯ୍ୟକ୍ରମ, ଗୋଷ୍ଠୀ ସହ ଅଂଶ ଗ୍ରହଣ, ପରିଷ୍କାର ପରିଚ୍ଛନ୍ନତା ଆଦି କାର୍ଯ୍ୟକ୍ରମ ସରକାରୀ ଓ ବେସରକାରୀ ସଂସ୍ଥା ଗୁଡ଼ିକର ସହାୟତାରେ ନିଆଯିବ ।

4. ମହିଳାମାନଙ୍କର ବିକାଶ ଓ ଉନ୍ନତି ନିମନ୍ତେ ସମସ୍ତ କାର୍ଯ୍ୟକ୍ରମରେ ଗୁରୁତ୍ୱ ଦିଆଯିବ ।

5. ସମାଜରେ ଅବହେଳିତ ଲୋକମାନଙ୍କର ଉନ୍ନତି ନିମନ୍ତେ ପ୍ରଥମେ ଗୁରୁତ୍ୱ ଦିଆଯିବ ।

6. ଆଞ୍ଚଳିକ ପରିବେଶର ସୁରକ୍ଷା ଲାଗି କାର୍ଯ୍ୟକ୍ରମମାନ ନିଆଯିବ ।

## ମୂଲ୍ୟାୟନ :-

1. ନିରବଚ୍ଛିନ୍ନ ବିକାଶ କହିଲେ କ'ଣ ବୁଝାଯାଏ ?
2. ଦାରିଦ୍ର୍ୟର ବିଲୋପ ସାଧନ କିପରି ଆମର ଉନ୍ନତି ପଥରେ ସହାୟକ ହେବ ?
3. ଲୋକମାନଙ୍କର ଉନ୍ନତି ନିମନ୍ତେ ଆଞ୍ଚଳିକ ସ୍ତରରେ କି କି କାର୍ଯ୍ୟକ୍ରମମାନ ନିଆଯିବ ?

## *ନାରୀ ପୁରୁଷ ମଧ୍ୟରେ ସମାନତା ଓ ନାରୀ ସାମର୍ଥ୍ୟର ବିକାଶ*

ନାରୀ ଓ ପୁରୁଷ ଉଭୟ ସମାନ । ସେମାନଙ୍କ ଜନ୍ମ ମଧ୍ୟ ସୁସ୍ଥ ସମାଜ ପାଇଁ ସମାନ ଅଧିକାର ନେଇ ହୋଇଛି । ଶାରୀରିକ ଲିଙ୍ଗଗତ ପ୍ରଭେଦ ସେମାନେ ସଂପାଦନ କରିବାକୁ ଥିବା ସ୍ୱତନ୍ତ୍ର ଭୂମିକା ଲାଗି ଅଭିପ୍ରେତ । ତେଣୁ ମଣିଷ ସମାଜରେ ନାରୀ ଓ ପୁରୁଷ ମଧ୍ୟରେ ସମାନତା ଓ ଭାରସାମ୍ୟ ରହୁ, ଏହା ପ୍ରକୃତି ଚାହେ ।

କିନ୍ତୁ ଆମେ ଆମ ସମାଜରେ ନାରୀ ଓ ପୁରୁଷ ମଧ୍ୟରେ ସମାନତା ନଥିବା ଭଳି ବିଭିନ୍ନ ପ୍ରକାରର କାର୍ଯ୍ୟ ଓ ଉଦାହରଣ ଦେଖିବାକୁ ପାଉ । ଏପରି କାର୍ଯ୍ୟ ଯୋଗୁଁ ଆମ ସମାଜର ପ୍ରଗତି ହୋଇପାରୁନାହିଁ । ବିଭିନ୍ନ କ୍ଷେତ୍ରରେ ନାରୀ ଓ ପୁରୁଷ ମଧ୍ୟରେ ଥିବା ତଫାତ୍ ଆପେ ଆପେ ବାରି ହୋଇପଡୁଛି । ପୁରୁଷ ଜଣକ ବାହାର କାମ କରିବ, ନାରୀର ବାହାର କାମ କାରିବାର ଯୋଗ୍ୟତା ଥିଲେ ମଧ୍ୟ ସେ କେବଳ ଘର କାମ କରିବ । ଏଭଳି ଅନେକ କଥା ଆମ ନଜରକୁ ଆସେ । ପୁରୁଷର ଶିକ୍ଷା, ସ୍ୱାସ୍ଥ୍ୟ ଓ ଉନ୍ନତ ଜୀବନ ପ୍ରତି ଯେତିକି ଧ୍ୟାନ ଦିଆଯାଉଛି, ସ୍ତ୍ରୀଲୋକଙ୍କର ଶିକ୍ଷା, ସ୍ୱାସ୍ଥ୍ୟ ପ୍ରତି ସେତିକି ଯତ୍ନ ନିଆଯାଉ ନାହିଁ । ତାକୁ ତା'ର ମୌଳିକ ଅଧିକାରରୁ ବଞ୍ଚିତ କରାଉଛି । ଝିଅଟିଏ ଜନ୍ମ ହେଲା ବେଳୁ ପୁଅ ଓ ଝିଅ ମଧ୍ୟରେ ଅନେକ ପାତର ଅନ୍ତର କରାଯାଉଛି । ଏପରି ଘଟଣା ଅନେକ କ୍ଷେତ୍ରରେ ଆମ ସମାଜରେ ଚିରାଚରିତ ପ୍ରଥାରୂପେ କେଉଁ

ଅନାଦି କାଳରୁ ଚଳି ଆସୁଛି । ଏହା ଫଳରେ ପୁରୁଷ ଓ ନାରୀ ମଧ୍ୟରେ ଏକ ଅନାବଶ୍ୟକ ପାଚେରୀ ଠିଆ ହେଉଛି । ଆମ ସମାଜର ଆଶାନୁରୂପ ପ୍ରଗତି ହୋଇପାରୁନି ।

ତେଣୁ ୧୯୯୪ ମସିହାରେ କାଇରୋଠାରେ ଅନୁଷ୍ଠିତ ହୋଇଥିବା ଜନସଂଖ୍ୟା ଓ ବିକାଶ ସଂପର୍କୀୟ ଆନ୍ତର୍ଜାତିକ ସମ୍ମିଳନୀରେ ଲିଙ୍ଗଗତ ସମାନତା, ନ୍ୟାୟ ଓ ମହିଳାମାନଙ୍କର ସାମର୍ଥ୍ୟର ବିକାଶ ଉପରେ ଗୁରୁତ୍ୱ ଦିଆଯାଇଥିଲା । କେତେକ ମୌଳିକ ଲକ୍ଷ୍ୟ ହାସଲ ନିମନ୍ତେ ଦିଗ୍‌ଦର୍ଶନ ମଧ୍ୟ ଦିଆଯାଇଥିଲା ।

**ଲକ୍ଷ୍ୟ :**

1. ସାମାଜିକ, ସଂସ୍କୃତିକ, ଅର୍ଥନୈତିକ ଏବଂ ରାଜନୈତିକ ଜୀବନ କ୍ଷେତ୍ରରେ ପୁରୁଷମାନଙ୍କ ଭଳି ନାରୀମାନଙ୍କର ସଂପୂର୍ଣ୍ଣ ଓ ସମାନ ଅଂଶ ଗ୍ରହଣର ଲକ୍ଷ୍ୟ ହାସଲ କରିବା ଓ ଲିଙ୍ଗ ଦୃଷ୍ଟିକୋଣରୁ ସୃଷ୍ଟି କରାଯାଉଥିବା ସମସ୍ତ ପାର୍ଥକ୍ୟ ଭିତ୍ତିକ କାର୍ଯ୍ୟର ବିଲୋପ ସାଧନ କରିବା ।

2. ସୁସ୍ଥ ପାରିବାରିକ ଓ ଗୋଷ୍ଠୀଗତ ଜୀବନ ଲାଗି ପୁରୁଷ ଓ ନାରୀଙ୍କୁ ଉଭୟ ସମାନ ମର୍ଯ୍ୟାଦା ଓ ଦାୟିତ୍ୱ ଦେବା ।

3. ଜୀବନର ସବୁ କ୍ଷେତ୍ରରେ ସ୍ତ୍ରୀ ଲୋକମାନଙ୍କର ଅଂଶ ଗ୍ରହଣ କିପରି ଫଳପ୍ରଦ ହୋଇପାରିବ, ସେଥିପାଇଁ ପୁରୁଷମାନଙ୍କ ମଧ୍ୟରେ ଅନୁକୂଳ ମନୋଭାବ ସୃଷ୍ଟି କରିବା ।

4. ନାରୀର ମର୍ଯ୍ୟାଦା ବୃଦ୍ଧି କରିବା ଓ ସେମାନଙ୍କ ମଧ୍ୟରେ ସଚେତନତା ସୃଷ୍ଟି ମାଧ୍ୟମରେ ସେମାନଙ୍କର ସମ୍ପୂର୍ଣ୍ଣ ଶକ୍ତି ଓ ସାମର୍ଥ୍ୟକୁ ଅନୁଭବ କରିବା ଲାଗି ସୁଯୋଗ ପ୍ରଦାନ କରିବା ।

5. ବିଭିନ୍ନ କ୍ଷେତ୍ରରେ ନାରୀର ଅଂଶଗ୍ରହଣ ନିମନ୍ତେ ସେମାନଙ୍କ ମଧ୍ୟରେ ଆବଶ୍ୟକ କୌଶଳ ବୃଦ୍ଧି କରିବା ଓ ସେମାନେ ଯେପରି ବିଭିନ୍ନ ତଥ୍ୟ ଓ ଜ୍ଞାନ ଆହରଣ କରିପାରିବେ ସେଥିପାଇଁ ସୁଯୋଗ ସୃଷ୍ଟି କରିବା ।

6. ନାରୀର ଉନ୍ନତି ଓ ମଙ୍ଗଳ ନିମନ୍ତେ ସରକାରୀ ସ୍ତରରେ ଦିଆଯାଉଥିବା ବିଭିନ୍ନ ସୁବିଧା ସୁଯୋଗ ସମ୍ପର୍କରେ ସେମାନଙ୍କୁ ଅବଗତ କରାଇବା ଓ ସରକାରଙ୍କ ଦ୍ୱାରା କାର୍ଯ୍ୟକାରୀ ହେଉଥିବା ବିଭିନ୍ନ ଆର୍ଥିକ ସାହାଯ୍ୟ ସଂପର୍କରେ ଜଣାଇବା ।

7. ସ୍ଥାୟୀ ବିକାଶ ପଥରେ ମହିଳାମାନଙ୍କର ଯୋଗଦାନ ଉପରେ ଗୁରୁତ୍ୱ ଦେବା । ସେମାନଙ୍କ ମଧ୍ୟରେ ନିଷ୍ପତ୍ତି ନେଲାଭଳି ନିଶ୍ଚିତ ସାମର୍ଥ୍ୟ ସୃଷ୍ଟି କରିବା ।

## ବିଷୟବସ୍ତୁ :

ନାରୀ ଓ ପୁରୁଷ ମଧ୍ୟରେ ସମାନତା, ସମତା, ସାମାଜିକ ନ୍ୟାୟ ଓ ନାରୀ ଶକ୍ତିର ବିକାଶ ଲାଗି ଉଭୟ ନାରୀ ଓ ପୁରୁଷଙ୍କର ସମାନ ଭୂମିକା ରହିଛି । ଜଣକର ମନୋଭାବ ଅନ୍ୟଜଣକ ପ୍ରତି ଅନୁକୂଳ ନ ହେଲେ ଏ ସଂପର୍କୀୟ ଲକ୍ଷ୍ୟ ହାସଲ କରିବା କଷ୍ଟକର ହେବ । ଏହା ଫଳରେ ମାତୃ ମୃତ୍ୟୁହାର, କନ୍ୟା ସନ୍ତାନ ପ୍ରତି ଅବହେଳା, ଉପଯୁକ୍ତ ନାରୀ ଶିକ୍ଷାର ଅଭାବ ଆଦି ବିଭିନ୍ନ ପ୍ରକାରର ସମସ୍ୟା ଦେଖାଦେବ । ସେହି ସବୁ ସମସ୍ୟାର ସମାଧାନ କରିବା ଲାଗି ଆମକୁ ନିମ୍ନଲିଖିତ ବିଷୟପ୍ରତି ଧ୍ୟାନ ଦେବାକୁ ପଡ଼ିବ ।

## ଶିଶୁ ମୃତ୍ୟୁ :

ଆମ ଦେଶରେ ଉନ୍ନତ ଦେଶମାନଙ୍କ ଅପେକ୍ଷା ଶିଶୁ ମୃତ୍ୟୁହାର ଖୁବ୍ ଅଧିକ । ସେଥିପାଇଁ ଆମର ଦରିଦ୍ର ଅବସ୍ଥା, ଉପଯୁକ୍ତ ଶିକ୍ଷାର ଅଭାବ ବିଶେଷ

ଭାବେ ଦାୟୀ । ପୁନଶ୍ଚ ଶିଶୁମାନଙ୍କ ମଧ୍ୟରେ କନ୍ୟା ସନ୍ତାନର ମୃତ୍ୟୁ ହାର ଖୁବ୍ ଅଧିକ । ଅଧିକାଂଶ ପିତାମାତା କନ୍ୟାସନ୍ତାନଟି ସେମାନଙ୍କ ମୁଣ୍ଡ ଉପରେ ବୋଝ ବୋଲି ମନେ କରନ୍ତି । ସମାଜରେ ପ୍ରଚଳିତ ଯୌତୁକ ପ୍ରଥା ଯୋଗୁଁ ମଧ୍ୟ କନ୍ୟାସନ୍ତାନଟିକୁ ଉପଯୁକ୍ତ ସମୟରେ ବିବାହ ଦେବା ସେମାନଙ୍କ ପକ୍ଷରେ କଷ୍ଟକର ହେଉଛି । କନ୍ୟା ସନ୍ତାନର ଆଗାମୀ ବୋଝ୍ ସେମାନେ ନେବାକୁ ଚାହୁଁ ନାହାଁନ୍ତି ।

ବିଶେଷତଃ ଶିକ୍ଷାର ଅଭାବ ଯୋଗୁଁ ଅନେକ ବ୍ୟକ୍ତି କନ୍ୟା ସନ୍ତାନଟିର ଲାଳନ ପାଳନରେ ଅବହେଳା କରୁଛନ୍ତି । ସେମାନେ ତାର ଯଥେଷ୍ଟ ଯତ୍ନ ନେଉ ନାହାଁନ୍ତି । ଶିଶୁଟି ଗର୍ଭରେ ଥିବା ସମୟରେ ମଧ୍ୟ ଯଦି କନ୍ୟା ସନ୍ତାନଟିଏ ଅଛି ବୋଲି ପରୀକ୍ଷା ଦ୍ୱାରା ଜାଣୁଛନ୍ତି, ତେବେ ମା'ର ସ୍ୱାସ୍ଥ୍ୟ ପ୍ରତି ଯେତିକି ଯତ୍ନ ନେବା କଥା ସେତିକି ନେଉ ନାହାଁନ୍ତି । ଏହାଛଡ଼ା ପ୍ରସବ ସମୟରେ ଅଧିକାଂଶ ମହିଳାଙ୍କର ମୃତ୍ୟୁ ହେବା ସମ୍ଭବ ହେଉଛି । ଲାଳନ ପାଳନ ଅଭାବରୁ ମଧ୍ୟ ଅଧିକାଂଶ କନ୍ୟା ସନ୍ତାନ ମରୁଛନ୍ତି ଓ କେତେକ ମଧ୍ୟ ସେମାନଙ୍କୁ ମାରି ଦେଉଛନ୍ତି । ତେଣୁ ଶିଶୁ ମୃତ୍ୟୁହାର, ବିଶେଷତଃ କନ୍ୟା ସନ୍ତାନମାନଙ୍କ ମୃତ୍ୟୁହାର ଖୁବ୍ ଅଧିକ ହେଉଛି ।

## ଘର କାମ :

ଗୋଟିଏ ପରିବାରରେ ସମସ୍ତେ ମିଳିମିଶି ରହନ୍ତି । ସେମାନେ ମିଳିମିଶି ରହିଲେ ମଧ୍ୟ ଘରର କାମଦାମ ଯେ ସମସ୍ତଙ୍କର ଏକଥା ହୁଏତ ଅନେକ ଭୁଲି ଯାଇଥାନ୍ତି । କେତେକ କ୍ଷେତ୍ରରେ ଦେଖାଯାଏ ଯେ ନାରୀ ଓ ପୁରୁଷ ମଧ୍ୟରେ ଘରକାମର ବୋଝ ସମାନ ଭାବରେ ନଥାଏ । ଏହା ଫଳରେ ଘରର ଝିଅ ବୋହୂମାନେ ଅଧିକ ସମୟ ଘର କାମରେ ଲାଗିଥାନ୍ତି । ସେହି ସମୟରେ ପୁରୁଷ ଲୋକମାନେ ବସି ହସ ଖୁସିରେ ସମୟ କଟାଉଥାନ୍ତି । ଘର କାମରେ ଟିକିଏ ହେଲେ ସ୍ତ୍ରୀଲୋକମାନଙ୍କୁ ସାହାଯ୍ୟ କରନ୍ତି ନାହିଁ । ପୁନଶ୍ଚ କେତେକ କନ୍ୟା ସନ୍ତାନଟି ଉପରେ ଘରର ସମସ୍ତ କାର୍ଯ୍ୟଭାର ଲଦି ପୁଅପିଲାଟିକୁ ପାଠପଢ଼ାରେ

ଲଗାଇଥାନ୍ତି । ସେମାନଙ୍କର ଏପରି କାର୍ଯ୍ୟ ନାରୀ ଓ ପୁରୁଷ ମଧ୍ୟରେ ସମାନତା ଆଣିବାରେ ଅନ୍ତରାୟ ସୃଷ୍ଟିକରିଥାଏ । ସେମାନେ ନାରୀ ସହିତ ସମଭାବେ ଘରକାମ କରିବାକୁ ଶିକ୍ଷା ପାଇବା ଉଚିତ । ତେଣୁ ସେମାନଙ୍କର ମନୋଭାବରେ ପରିବର୍ତ୍ତନ ଲାଗି ସଚେତନତା ସୃଷ୍ଟି କରିବା କାର୍ଯ୍ୟକ୍ରମର ଆବଶ୍ୟକ ରହିଛି ।

## ସହଜ ବିବାହ :

ଆମ ଦେଶରେ ଆଇନ ଅନୁସାରେ ଝିଅଟିଏ 18ବର୍ଷ ଓ ପୁଅଟିଏ 21 ବର୍ଷରୁ କମ୍ ବୟସରେ ବିବାହ କରିପାରିବ ନାହିଁ । ଏ ବ୍ୟବସ୍ଥା ଆଇନ୍‌ରେ ଥିଲେ ମଧ୍ୟ ଉପଯୁକ୍ତ ଶିକ୍ଷାର ଅଭାବରୁ ଅଧିକାଂଶ ପିତାମାତା ଝିଅଟିକୁ କମ୍ ବୟସରେ ବିବାହ ଦେଉଛନ୍ତି । କମ୍ ବୟସର ବିବାହ ଯୋଗୁଁ ରୁଗ୍ଣ ଶିଶୁ ଜାତ, ଶିଶୁ ଜନ୍ମ ସମୟରେ ମା'ର ମୃତ୍ୟୁ, ଅଳ୍ପ ବୟସରେ ମା' ହେବା ହେତୁ ମା'ଠାରେ ରକ୍ତହୀନତା ଆଦି ଦେଖାଯାଉଛି ।

## ଶିକ୍ଷା :

ଆମ ସମାଜରେ କନ୍ୟାସନ୍ତାନର ଶିକ୍ଷା ଉପରେ କମ୍ ଗୁରୁତ୍ୱ ଦିଆଯାଉଅଛି । ଏଥିପାଇଁ ଲୋକମାନଙ୍କର ଆର୍ଥିକ ଅବସ୍ଥା ବେଶୀ ପରିମାଣରେ ଦାୟୀ । ଗ୍ରାମାଞ୍ଚଳର ଲୋକେ ସାଧାରଣତଃ ଚାଷୀ ମୂଲିଆ ଶ୍ରେଣୀର । ସେମାନେ ଚାଷ ଓ ଅନ୍ୟାନ୍ୟ ଘରୋଇ କାମରେ ଝିଅମାନଙ୍କୁ ଲଗାଉଥିବା ହେତୁ ସେମାନଙ୍କର ଶିକ୍ଷା ଦିଗଟିକୁ ଭୁଲିଯାଇଥାନ୍ତି । ସହରାଞ୍ଚଳରେ ମଧ୍ୟ ବସବାସ କରୁଥିବା ଶ୍ରମିକ ଶ୍ରେଣୀ ଲୋକମାନଙ୍କର ଏପରି ପରିସ୍ଥିତି ହୋଇଥାଏ । ଶିକ୍ଷାର ଅଭାବରୁ ଝିଅଟିଏ ବିଭିନ୍ନ ତଥ୍ୟ, ଦେଶ ବିଦେଶର ଖବର, ନିଜର ରୋଜଗାର ଓ ଆର୍ଥିକ ଉନ୍ନତି ନିମନ୍ତେ ଭବିଷ୍ୟତରେ ନେବାକୁ ଥିବା ବିଭିନ୍ନ ପନ୍ଥା ସମ୍ପର୍କରେ ଜାଣିବାକୁ ପାଇନଥାଏ । ନିଜର ସ୍ୱାସ୍ଥ୍ୟ କିପରି ଭଲ ରହିବ, ସନ୍ତାନଟିର ଲାଳନ ପାଳନ କିପରି କରାଯିବ, ସେ ସମ୍ପର୍କରେ ଜାଣିବାର ସୁଯୋଗ ପାଇପାରିନଥାଏ ।

ତେଣୁ କନ୍ୟା ସନ୍ତାନ ଓ ମହିଳାମାନଙ୍କୁ ରୋଜଗାର ସଂପର୍କୀୟ ବିଭିନ୍ନ ପ୍ରଶିକ୍ଷଣ, ଧନ୍ଦାମୂଳକ ଶିକ୍ଷା ଆଦି ସଂପର୍କରେ ତାଲିମ୍ ଦିଆଯିବା ଉଚିତ ।

## କର୍ମ ସ୍ଥାନରେ ଭେଦଭାବ :

ବିଭିନ୍ନ କର୍ମ ସମ୍ପାଦନ କଲାବେଳେ ଆମ ସମାଜରେ ଏବେ ବି ନାରୀ ଓ ପୁରୁଷଙ୍କୁ ଆମେ ସମାନ ଦୃଷ୍ଟିକୋଣରୁ ଦେଖୁନାହୁଁ । ମଜୁରୀ ଦେବାବେଳେ ପୁରୁଷଙ୍କୁ ଅଧିକ ପଇସା ଓ ନାରୀଙ୍କୁ କମ୍ ପାଉଣା ଦିଆଯାଉଅଛି । କିନ୍ତୁ କାର୍ଯ୍ୟ ଦୃଷ୍ଟିକୋଣରୁ ନାରୀର କାମ ପୁରୁଷ ତୁଳନାରେ କୌଣସି ଦୃଷ୍ଟିରୁ କମ୍ ନୁହେଁ । ସେଥିପାଇଁ ନାରୀ ଓ ପୁରୁଷ ମଧ୍ୟରେ କର୍ମକ୍ଷେତ୍ରରେ କୌଣସି ଭେଦଭାବ ଅଣାଯିବା ଉଚିତ ନୁହେଁ ।

## ନାରୀପ୍ରତି ଅଶାଳୀନ ବ୍ୟବହାର :

ନାରୀ ପ୍ରତି ଅଶାଳୀନ ଆଚରଣ ପ୍ରଦର୍ଶନ ସମ୍ପର୍କରେ ବିଭିନ୍ନ ସମ୍ବାଦ ଏବେ ଖବର କାଗଜମାନଙ୍କରେ ପ୍ରକାଶିତ ହେଉଛି । ଏପରି ଅସୌଜନ୍ୟ ଆଚରଣ ଉଭୟେ ଘରେ ଓ ବାହାରେ ମଧ୍ୟ ଘଟୁଛି । ଯୌତୁକଜନିତ ନିର୍ଯ୍ୟାତନା ଅନେକ ସମୟରେ ହିଂସ୍ରରୂପ ନେଇ ବଧୂହତ୍ୟାରେ ରୂପାନ୍ତରିତ ହେଉଛି । ବାହାରେ, କର୍ମ କ୍ଷେତ୍ରରେ ମଧ୍ୟ ସେମାନଙ୍କର ନିରାପତ୍ତା ପ୍ରତି ସାବଧାନତାର ଅଭାବ ରହୁଛି । ମହିଳା ମଣ୍ଡଳ ମାଧ୍ୟମରେ ସାମାଜିକ ନିରାପତ୍ତା ଲାଗି ଜନମତ ଓ ସୁରକ୍ଷା ସୃଷ୍ଟି କରିବା ଏକାନ୍ତ ଆବଶ୍ୟକ । ଅବଶ୍ୟ ଆମର ସର୍ବୋଚ୍ଚ ନ୍ୟାୟାଳୟ ନାରୀ ସୁରକ୍ଷା ପାଇଁ ଅନେକ ଆଇନ୍‌ଗତ ବିଧି ବ୍ୟବସ୍ଥା କରିଛନ୍ତି । କିନ୍ତୁ କେବଳ ଆଇନଗତ ବ୍ୟବସ୍ଥା ହେବା ଦ୍ୱାରା ଏଭଳି ସମ୍ବେଦନଶୀଳ ସମସ୍ୟାର ସମାଧାନ ହୋଇପାରିବ ନାହିଁ । ସେଥିପାଇଁ ଉଭୟ ନାରୀ ଓ ପୁରୁଷ ସଚେତନ ହେବା ଆବଶ୍ୟକ । ବିଶେଷକରି ମହିଳାମାନେ ସେମାନଙ୍କର ଅଧିକାର ଓ ସୁରକ୍ଷା ନିମନ୍ତେ ଆଇନ୍‌ଗତ ବ୍ୟବସ୍ଥା ସମ୍ପର୍କରେ ଜାଣିବା ଏକାନ୍ତ ପ୍ରୟୋଜନ ।

## ଜନ ଜୀବନରେ କାର୍ଯ୍ୟ :

ଆମ ଦେଶରେ ଥିବା ସର୍ବସାଧାରଣଙ୍କ କାର୍ଯ୍ୟାଳୟରେ ଆବଶ୍ୟକତା ଅନୁଯାୟୀ ମହିଳାମାନଙ୍କ ସଂଖ୍ୟା ଖୁବ୍ କମ୍ । ରାଜନୈତିକ ସ୍ତରରେ ସେମାନଙ୍କର ଉପଯୁକ୍ତ ପ୍ରତିନିଧିତ୍ୱ ପାଇଁ କିଛି ବ୍ୟବସ୍ଥା ହୋଇଛି । ଯେଉଁ କ୍ଷେତ୍ରରେ ସୁବିଧା ଓ ସୁଯୋଗ ଅଛି ସେ କ୍ଷେତ୍ରରେ ସେମାନଙ୍କର ଉପଯୁକ୍ତ ଶିକ୍ଷା ଓ ବିକାଶର ଅଭାବ ଯୋଗୁଁ ସେମାନେ ଉପଯୁକ୍ତ ନିଷ୍ପତ୍ତି ଓ ଅଂଶ ଗ୍ରହଣରୁ ନିଜକୁ ବଞ୍ଚିତ କରୁଛନ୍ତି । ସେମାନଙ୍କୁ ଅଧିକ ଶକ୍ତିଶାଳୀ କରିବା ନିମନ୍ତେ ସାମାଜିକ ଓ ରାଜନୈତିକ ସଂସ୍ଥାମାନଙ୍କରେ ସେମାନଙ୍କର ଅଂଶ ଗ୍ରହଣକୁ ଅଧିକ ପରିମାଣରେ ପ୍ରୋତ୍ସାହିତ କରାଯିବା ଆବଶ୍ୟକ ଓ ଆବଶ୍ୟକ ସ୍ଥଳେ ପ୍ରଚଳିତ ଆଇନ୍‌ରେ ମଧ୍ୟ ସଂଶୋଧନ ଅଣାଯିବା ଆବଶ୍ୟକ ।

## ପ୍ରଶିକ୍ଷଣ ସଂପର୍କୀୟ କାର୍ଯ୍ୟ :

ପ୍ରଶିକ୍ଷଣ ସମୟରେ ଆଲୋଚନା :

- ମହିଳାମାନଙ୍କର ଭୂମିକା-ପରିବାର ଓ ସାମାଜିକ କ୍ଷେତ୍ରରେ ।
- ସାଂପ୍ରତିକ ପାରମ୍ପରିକ ସ୍ଥିତି ଓ ପରିବର୍ତ୍ତିତ ପରିସ୍ଥିତିରେ ସେମାନଙ୍କଠାରୁ ଆଶା କରାଯାଉଥିବା ଭୂମିକା ।
- ପରିବାର ଓ ସମାଜରେ ମହିଳାମାନେ ସମ୍ମୁଖୀନ ହେଉଥିବା ବିଭିନ୍ନ ପ୍ରକାରର ଭେଦଭାବ ପରିସ୍ଥିତି ।
- ମହିଳାମାନଙ୍କର ସ୍ଥିତି ଓ ମର୍ଯ୍ୟାଦାର ଉନ୍ନତି କଳ୍ପେ ହେବାକୁ ଥିବା ବିଭିନ୍ନ ପ୍ରକାରର ପଦକ୍ଷେପ ।
- ମହିଳାମାନଙ୍କର ଶିକ୍ଷା ଓ ଆତ୍ମ ନିର୍ଭରଶୀଳତା ସଂପର୍କୀୟ କାର୍ଯ୍ୟ ଓ ପଦକ୍ଷେପ ।

- ପୁରୁଷ ଉପରେ ନିର୍ଭରଶୀଳ ମହିଳା ଓ ଆତ୍ମ ନିର୍ଭରଶୀଳ ମହିଳାମାନଙ୍କ ସଂପର୍କରେ ତୁଳନାତ୍ମକ ଅଧ୍ୟୟନ ।
- ସାମାଜିକ, ସାଂସ୍କୃତିକ, ରାଜନୈତିକ, ଅର୍ଥନୈତିକ, ଶିକ୍ଷା, ବିଜ୍ଞାନ ଆଦି ବିଭିନ୍ନ କ୍ଷେତ୍ରରେ ସଫଳତା ହାସଲ କରିଥିବା ମହିଳାମାନଙ୍କ ସଂପର୍କରେ ଆଲୋଚନା ।

## ପ୍ରଶିକ୍ଷଣ ପରବର୍ତ୍ତୀ କାର୍ଯ୍ୟ :

- ସାମାଜିକ, ସାଂସ୍କୃତିକ ଓ ରାଜନୈତିକ କ୍ଷେତ୍ରରେ ମହିଳାମାନଙ୍କର ଯୋଗଦାନ ନିମନ୍ତେ ପୁରୁଷମାନଙ୍କ ମଧ୍ୟରେ ଅନୁକୂଳ ମନୋଭାବ ସୃଷ୍ଟି ।
- ରୋଜଗାର ସଂପର୍କୀୟ ତାଲିମ୍ କାର୍ଯ୍ୟକ୍ରମର ଆୟୋଜନ । ଏହି କାର୍ଯ୍ୟକ୍ରମରେ ବିଭିନ୍ନ ସଂସ୍ଥାର ସହଯୋଗ ନିମନ୍ତେ ଚେଷ୍ଟା ।
- ସମାଜରେ ମହିଳାମାନଙ୍କ ସହିତ ପୁରୁଷମାନଙ୍କ ସମାନତା, ନ୍ୟାୟ ଓ ବିକାଶ ସଂପର୍କୀୟ ସଚେତନତା ସୃଷ୍ଟି ପାଇଁ ଉଦ୍ଦିଷ୍ଟ କାର୍ଯ୍ୟକ୍ରମ ।
- ମହିଳାମାନଙ୍କ କୃତିତ୍ୱ ସଂପର୍କରେ ପ୍ରକାଶିତ ବିଭିନ୍ନ ସମ୍ବାଦର ପଠନ ଓ ଆଲୋଚନା ।
- ଆଇନ ଏବଂ ନ୍ୟାୟପ୍ରଦାନ ସଂପର୍କିତ ବିଭିନ୍ନ ଆଲୋଚନା-ଚକ୍ରରେ ମହିଳାମାନଙ୍କର ଯୋଗଦାନ ।
- ମହିଳାମାନଙ୍କର ଅଧିକାର ଓ ସୁରକ୍ଷା ନିମନ୍ତେ କାର୍ଯ୍ୟରତ ସଂଗଠନ ଦ୍ୱାରା ପ୍ରେରଣା ।

## ମୂଲ୍ୟାୟନ :

1. ନାରୀ ଓ ପୁରୁଷ ମଧ୍ୟରେ ସମାନତା ନ ରହିବାର କାରଣ କ'ଣ ?
2. ସେମାନଙ୍କ ମଧ୍ୟରେ ସମାନତା ଆଣିବା ନିମନ୍ତେ କି କି କାର୍ଯ୍ୟପନ୍ଥା ଗ୍ରହଣ କରାଯାଇପାରିବ ?
3. ମହିଳା ମାନଙ୍କର ଉନ୍ନତି ହେଲେ ପରିବାରର ଉନ୍ନତି ହେବ କିପରି ?

## *କୈଶୋର ଶିକ୍ଷା*

ପୃଥିବୀର ଜନସଂଖ୍ୟାର ପ୍ରାୟ ଏକ ପଞ୍ଚମାଂଶ ହେଉଛନ୍ତି କିଶୋର ଓ କିଶୋରୀ । ୧୨୨୪ରେ କାଇରୋଠାରେ ଅନୁଷ୍ଠିତ ଆନ୍ତର୍ଜାତିକ ସମ୍ମିଳନୀରେ ଯୋଗ ଦେଇଥିବା ସମସ୍ତ ରାଷ୍ଟ୍ରର ପ୍ରତିନିଧିଗଣ ଅନୁଭବ କରିଥିଲେ ଯେ କୈଶୋରାବସ୍ଥାରେ ଥିବା ବ୍ୟକ୍ତି ବିଶେଷ ଚାହୁଥିବା ତଥ୍ୟ ସେମାନଙ୍କୁ ଦିଆଯାଉ ନାହିଁ । ଏହା ଫଳରେ ଜନସଂଖ୍ୟାର ବିକାଶ ପଥରେ ବିଶେଷ ଅନ୍ତରାୟ ସୃଷ୍ଟି ହେଉଅଛି । ସେଥିପାଇଁ ଏହି ସମ୍ମିଳନୀରେ କିଶୋର କିଶୋରୀମାନଙ୍କର ସ୍ୱାସ୍ଥ୍ୟ ବିଶେଷତଃ ପ୍ରଜନନ ସ୍ୱାସ୍ଥ୍ୟ ଉପରେ ବିଶେଷ ଗୁରୁତ୍ୱ ଦିଆଯାଇଥିଲା । ସେମାନେ ଚାହୁଥିବା ଶାରୀରିକ, ଶରୀରତତ୍ତ୍ୱ, **HIV/AIDS** ଔଷଧର ଅପବ୍ୟବହାର ଆଦି ସଂପର୍କୀୟ ତଥ୍ୟ ସେମାନଙ୍କୁ ଯେପରି ମିଳିପାରିବ ଓ ସେମାନେ ଯେପରି ସୁସ୍ଥ ଜୀବନ ଯାପନ କରିପାରିବେ ସେଥିପାଇଁ ମଧ୍ୟ ଦୃଷ୍ଟି ଦେବାକୁ କୁହାଯାଇଥିଲା ।

## ଲକ୍ଷ୍ୟ :

1. କିଶୋର କିଶୋରୀମାନେ କୈଶୋରାବସ୍ଥାରେ ସମ୍ମୁଖୀନ ହେଉଥିବା ସମସ୍ୟାଗୁଡ଼ିକ ସଂପର୍କରେ ପରିଚିତ ହେବେ ।

2. ସେମାନେ ପ୍ରଜନନ ସ୍ୱାସ୍ଥ୍ୟ ସଂପର୍କରେ ଜାଣିବେ ଏବଂ ସେମାନଙ୍କ ଲିଙ୍ଗଗତ ଭୂମିକା (Sex roles) ବିଷୟରେ ଅବହିତ ହେବେ ।

3. ଯୌନଗତ ରୋଗ (STD), ଏଚ୍.ଆଇ.ଭି, ଏଡ୍‌ସ୍‌ରୁ ରକ୍ଷା ପାଇବାର ଉପାୟମାନ ଜାଣିବେ ।

4. ଔଷଧ ଅପବ୍ୟବହାର ସଂପର୍କରେ ଅବହିତ ହେବେ ଓ ଯେକୌଣସି ବାଧବାଧକତା ପରିସ୍ଥିତିରେ 'ନା' କହିବାର କୌଶଳ ଶିକ୍ଷା କରିବେ ।

## କୈଶୋରାବସ୍ଥା ଓ ସମୟ ବିଭାଜନ :

ନବଯୌବନ ଆସିବାଠାରୁ ବୟସ୍କ ହେବା ପର୍ଯ୍ୟନ୍ତ ଅବସ୍ଥାକୁ ସାଧାରଣତଃ କୈଶୋରାବସ୍ଥା କୁହାଯାଏ । କୈଶୋରାବସ୍ଥା ସମସ୍ତ ବ୍ୟକ୍ତି ବିଶେଷଙ୍କର ଏକ ନିର୍ଦ୍ଦିଷ୍ଟ ବୟସରୁ ଆସିନଥାଏ । ସେହିପରି ଏହା ଏକ ନିର୍ଦ୍ଦିଷ୍ଟ ବୟସରେ ମଧ୍ୟ ଶେଷ ହୁଏ ନାହିଁ । ତଥାପି ବିଭିନ୍ନ ଦେଶର କିଶୋର କିଶୋରୀମାନଙ୍କର ଶାରୀରିକ ଅଭିବୃଦ୍ଧିକୁ ଦେଖି ସାଧାରଣତଃ 10 ବର୍ଷରୁ 19 ବର୍ଷ ବୟସ ପର୍ଯ୍ୟନ୍ତ ସମୟକୁ କୈଶରାବସ୍ଥା ବୋଲି କୁହାଯାଇଥାଏ । UNESCOର ଏକ ରିପୋର୍ଟ ଅନୁଯାୟୀ 24ବର୍ଷ ବୟସ ମଧ୍ୟରେ ଥିବା ନବ ଦମ୍ପତିମାନେ ମଧ୍ୟ ଏହି ଅବସ୍ଥାର ଅନ୍ତର୍ଭୁକ୍ତ ।

## କୈଶୋରାବସ୍ଥା ଓ ଅଭିବୃଦ୍ଧି :

କୈଶୋରାବସ୍ଥାରେ ପୁଅ ଓ ଝିଅମାନଙ୍କର ଶାରୀରିକ ଅଭିବୃଦ୍ଧି କ୍ଷୀପ୍ରତର ହୋଇଥାଏ । ସେମାନଙ୍କର ଉଚ୍ଚତା, ଓଜନ, ଶରୀରର ବିଭିନ୍ନ ଅଙ୍ଗପ୍ରତ୍ୟଙ୍ଗର ପରିବର୍ତ୍ତନ ହଠାତ୍ ବାରିହୁଏ । ଏହିସବୁ ପରିବର୍ତ୍ତନ ଶରୀରରେ ଥିବା ହରମୋନ୍‌ର ପରିବର୍ତ୍ତନ ଯୋଗୁଁ ଘଟିଥାଏ ।

ଶାରୀରିକ ପରିବର୍ତ୍ତନ ସହିତ ମଧ୍ୟ ବୌଦ୍ଧିକ ପରିବର୍ତ୍ତନ ଆଶାନୁରୂପ ଘଟିଥାଏ । ଏହି ଅବସ୍ଥାରେ କିଶୋର କିଶୋରୀମାନେ ନିଜ ମନ ମଧ୍ୟରେ ଏକ ନୂତନ କାଳ୍ପନିକ ଦୁନିଆର ଆଭାସ ପାଇଥାନ୍ତି । ପିତାମାତାଙ୍କ ଅପେକ୍ଷା ସେମାନେ ସେମାନଙ୍କ ସାଙ୍ଗସାଥୀଙ୍କ ଉପରେ ଅଧିକ ଗୁରୁତ୍ୱ ଦିଅନ୍ତି ।

## କୈଶୋରାବସ୍ଥା, ଯୌନ ସମସ୍ୟା ଓ ସଚେତନତା :

କୈଶୋରାବସ୍ଥାରେ ଉଭୟ କିଶୋର ଓ କିଶୋରୀଙ୍କ ମନରେ ଯୌନ ଉଦ୍ଦୀପନା ଦେଖାଦେଇଥାଏ । ସେମାନଙ୍କର ମନରେ ଏହି ସମୟରେ ଶୃଙ୍ଖଳିତ ଯୌନ ଜୀବନ ସଂପର୍କରେ ସଚେତନା ସୃଷ୍ଟି କରାଯିବା ଆବଶ୍ୟକ ; କାରଣ ଉପଯୁକ୍ତ ଯୌନ ସଚେତନା ଓ ଶିକ୍ଷାର ଅଭାବରେ କେତେକ କିଶୋର କିଶୋରୀ ପ୍ରାକ୍‌ବିବାହ ଯୌନ କାର୍ଯ୍ୟରେ ଲିପ୍ତ ହୁଅନ୍ତି ।

ଏତଦ୍ ବ୍ୟତୀତ ଏହି ସମୟ ଯୌନ ଶିକ୍ଷା (Sex Education) ପାଇଁ ପ୍ରକୃଷ୍ଟ ସମୟ । ବୀର୍ଯ୍ୟ ସ୍ଖଳନ, ଋତୁସ୍ରାବ, ହସ୍ତମୈଥୁନ ଆଦି ସମ୍ପର୍କରେ ଯଥାଯଥ ଜ୍ଞାନର ଅଭାବରେ କିଶୋର କିଶୋରୀମାନେ ବହୁ ଭ୍ରାନ୍ତ ଧାରଣାର ଶିକାର ହୋଇଥାନ୍ତି । ବିଶୃଙ୍ଖଳିତ ଯୌନଜୀବନ ଯୋଗୁଁ STD, HIV/AIDSର ମଧ୍ୟ ଶିକାର ହେବାର ସମ୍ଭାବନା ଥାଏ । କୁସଙ୍ଗ ମଧ୍ୟ କେତେକ କ୍ଷେତ୍ରରେ ନିଶା ଔଷଧ ସେବନ କରିବାକୁ ପ୍ରୋତ୍ସାହିତ କରିଥାଏ । ଉପଯୁକ୍ତ ଶିକ୍ଷା ଯଥାର୍ଥ ମାର୍ଗ ପ୍ରଦର୍ଶନ କରିବା ସହିତ କିଶୋର କିଶୋରୀମାନଙ୍କୁ ଶୃଙ୍ଖଳିତ ଜୀବନ ଯାପନ କରିବାକୁ ପ୍ରୋତ୍ସାହିତ କରିଥାଏ ।

## ସାମାଜିକ ଓ ନୈତିକ ମୂଲ୍ୟବୋଧ :

ଆମର ସମାଜ, ସଂସ୍କୃତି ଓ ପରମ୍ପରା ଯଥେଷ୍ଟ ଉନ୍ନତ । ଉପଯୁକ୍ତ ନୈତିକ ମୂଲ୍ୟବୋଧ ସୁନ୍ଦର ସାମାଜିକ ଜୀବନ ଯାପନରେ ସାହାଯ୍ୟ କରିଥାଏ । କୈଶୋରାବସ୍ଥାରେ ମହାପୁରୁଷମାନଙ୍କ ଜୀବନୀପାଠ, ବ୍ରହ୍ମଚର୍ଯ୍ୟ ପାଳନ, ବିପରୀତ ଲିଙ୍ଗପ୍ରତି ସମ୍ମାନ ପ୍ରଦର୍ଶନ ଆଦି ଗୁଣାବଳୀ ସୁସ୍ଥ ଜୀବନଯାପନରେ ସାହାଯ୍ୟ କରିଥାଏ ।

## ପ୍ରଶିକ୍ଷଣ କାର୍ଯ୍ୟାବଳୀ :

ପ୍ରଶିକ୍ଷାର୍ଥୀମାନଙ୍କ ସହିତ ପ୍ରଶିକ୍ଷଣ ସମୟରେ ନିମ୍ନଲିଖିତ ବିଷୟରେ ଆଲୋଚନା କରାଯିବ :

(କ) କୈଶୋରାବସ୍ଥାରେ ଘଟୁଥିବା ଶାରୀରିକ , ମାନସିକ ଓ ସାମାଜିକ ଅଭିବୃଦ୍ଧି ଓ ସେଗୁଡ଼ିକ ମଧ୍ୟରେ ଥିବା ସଂପର୍କ ।

(ଖ) ଯୌନଜୀବନ ସଂପର୍କୀୟ ନୀତି ଓ ନିୟମ ।

(ଗ) ଅବାଞ୍ଛିତ ଯୌନ ବିଶୃଙ୍ଖଳା ଯୋଗୁଁ ଘଟୁଥିବା ଦୁଃଖଦାୟକ ଘଟଣାବଳୀ ।

(ଘ) କୈଶୋର ଶିକ୍ଷାର ଆବଶ୍ୟକତା ।

## ପ୍ରଶିକ୍ଷଣ ପରବର୍ତ୍ତୀ କାର୍ଯ୍ୟାବଳୀ :

(କ) କାର୍ଯ୍ୟ ପରିସର ମଧ୍ୟରେ ଥିବା କିଶୋର କିଶୋରୀମାନଙ୍କୁ ଚିହ୍ନଟ କରିବା ଓ ସେମାନେ ସମ୍ମୁଖୀନ ହେଉଥିବା ସମସ୍ୟା ସମ୍ପର୍କରେ ସେମାନଙ୍କ ସହିତ ଆଲୋଚନା କରିବା ।

(ଖ) କିଶୋର କିଶୋରୀମାନଙ୍କ ସାମଗ୍ରିକ ଆବଶ୍ୟକତା ଜାଣିବା ପାଇଁ ଆବଶ୍ୟକତା ଭିତ୍ତିକ ଅଧ୍ୟୟନ (Need Assement Study) ଓ ଗବେଷଣା ।

(ଗ) ସେମାନଙ୍କୁ କୈଶୋର ଶିକ୍ଷା ସଂପର୍କୀୟ ପୁସ୍ତକ ପ୍ରଦାନ ଓ ବିଶେଷଜ୍ଞମାନଙ୍କ ଦ୍ୱାରା ତତ୍ ସଂପର୍କୀୟ ଜ୍ଞାନ ପ୍ରଦାନ ।

(ଘ) STD/HIV/AIDS ସଂପର୍କୀୟ ପୁସ୍ତକ ଓ ତଥ୍ୟ ସମ୍ବଳିତ ଶିକ୍ଷଣ ସାମଗ୍ରୀ ପ୍ରଦର୍ଶନୀର ଆୟୋଜନ ।

## ମୂଲ୍ୟାୟନ :

1. କୈଶୋରାବସ୍ଥା କହିଲେ କ'ଣ ବୁଝ ?
2. ଏହି ସମୟରେ କିଶୋର କିଶୋରୀମାନଙ୍କର କି କି ଶାରୀରିକ, ମାନସିକ, ସାମାଜିକ ପରିବର୍ତ୍ତନ ଘଟିଥାଏ ?
3. କୈଶୋର 'ଶିକ୍ଷା' ଅନ୍ତର୍ଭୁକ୍ତ ବିଷୟଗୁଡ଼ିକର ଏକ ତାଲିକା ପ୍ରସ୍ତୁତ କର ।

## *ପରିବାର : ସାମାଜିକ ଓ ଅର୍ଥନୈତିକ ପରିବର୍ତ୍ତନର ଆଧାର ଓ ଗୁଣାତ୍ମକ ଜୀବନ*

ପରିବାର ମଣିଷ ସମାଜର ସବୁଠାରୁ ପୁରାତନ ଅନୁଷ୍ଠାନ । ବିବାହଦ୍ୱାରା ପରିବାରର ସୃଷ୍ଟି ହୋଇଥାଏ । ସ୍ୱାମୀ ସ୍ତ୍ରୀଙ୍କ ମିଳନରୁ ପରିବାରକୁ ସନ୍ତାନ ସନ୍ତତି ଆସିଥାନ୍ତି । ପରିବାରର ଆକାର ଉପରେ ପରିବାରର କଲ୍ୟାଣ ନିର୍ଭର କରିଥାଏ ।

ପରିବାରର କାର୍ଯ୍ୟକଳାପ ଯୋଗୁଁ ପରିବାରର ଅର୍ଥନୈତିକ ଓ ସାମାଜିକ ସ୍ଥିତି ନିର୍ଭର କରିଥାଏ । ଉନ୍ନତ ଓ ଗୁଣାତ୍ମକ ଜୀବନ ନିମନ୍ତେ ପରିବାରର ଭୂମିକା ଯଥେଷ୍ଟ ଥାଏ ।

## ଲକ୍ଷ୍ୟ :

1. ସମାଜର ଏକ ମୌଳିକ ଅନୁଷ୍ଠାନ ରୂପେ ପରିବାରର ଭୂମିକା ସଂପର୍କରେ ପରିଚିତ ହେବା ।
2. ପରିବାରର ଉନ୍ନତି ନିମନ୍ତେ ସାମାଜିକ ଓ ଅର୍ଥନୈତିକ କାର୍ଯ୍ୟକଳାପ କ'ଣ, ସେ ସଂପର୍କରେ ଜାଣିବା ।

୩.   ଗୁଣାତ୍ମକ ଜୀବନଯାପନ ଲାଗି ପରିବାରର ସଦସ୍ୟମାନେ କି କି ଭୂମିକା ନେଇ ପାରିବେ, ସେ ସଂପର୍କରେ ଅବଗତ ହେବା ।

## ବିଷୟବସ୍ତୁ :

ବିବାହ ଏକ ସାମାଜିକ ଅନୁଷ୍ଠାନ । ବିବାହଦ୍ୱାରା ସନ୍ତାନ ସନ୍ତତି ପରିବାରକୁ ଆସିଥାନ୍ତି । ସନ୍ତାନ ସନ୍ତତିଙ୍କ ସଂଖ୍ୟା ଉପରେ ପରିବାରର ସଂଖ୍ୟା ନିର୍ଭର କରିଥାଏ । ସେମାନଙ୍କ ସଂଖ୍ୟା ଅଧିକ ହେଲେ ପରିବାରର ସମ୍ବଳ ଉପରେ ଅଧିକ ଚାପ ପଡ଼ିଥାଏ । ଉନ୍ନତ ଜୀବନ ଯାପନ କରିବା କଷ୍ଟକର ହୋଇଥାଏ ।

ପରିବାରର ଉନ୍ନତି ପରିବାରର ସମସ୍ତ ସଦସ୍ୟଙ୍କ ଉପରେ ନିର୍ଭର କରିଥାଏ । ସେମାନେ ସମସ୍ତେ ମିଳିମିଶି କାମ କରିବା ଉଚିତ । ପରିବାରର ସମସ୍ତ କାମ ସମସ୍ତେ କରିପାରିବେ । କାର୍ଯ୍ୟକ୍ଷେତ୍ରରେ ପୁରୁଷ-ସ୍ତ୍ରୀ, ପୁଅ-ଝିଅ ଆଦି ଭେଦଭାବ ଆଣିଲେ ପରିବାରର ଉନ୍ନତି ବ୍ୟାହତ ହୁଏ । ସମସ୍ତେ ପରିବାର ସଂପର୍କୀୟ ବିଭିନ୍ନ ସମସ୍ୟା ଓ କାର୍ଯ୍ୟ ସମ୍ପର୍କରେ ମିଳିମିଶି ନିଷ୍ପତ୍ତି ନେଲେ ପରିବାରର ବହୁ ସମସ୍ୟା ସମାଧାନ ହୁଏ । କୌଣସି ଜଣେ ସଦସ୍ୟ ଉପରେ ଅଧିକ ଚାପ ପଡ଼େ ନାହିଁ ।

ସ୍ୱାସ୍ଥ୍ୟ ଏକ ଅମୂଲ୍ୟ ସଂପଦ । ପରିବାରର ସଦସ୍ୟମାନଙ୍କର ସ୍ୱାସ୍ଥ୍ୟ ଭଲ ରହିଲେ ପରିବାରର ମାନସିକ ସ୍ଥିତି ମଧ୍ୟ ଭଲ ରହିବ । ପରିବାରରେ ଥିବା ଗର୍ଭବତୀ ମହିଳା, କିଶୋର କିଶୋରୀମାନଙ୍କର ସ୍ୱାସ୍ଥ୍ୟ ପ୍ରତି ସମସ୍ତେ ଯତ୍ନବାନ ହେବା ଉଚିତ ।

ଅଧିକାଂଶ କ୍ଷେତ୍ରରେ ଦେଖାଯାଏ ଯେ ମହିଳାମାନଙ୍କ ପ୍ରତି ପୁରୁଷମାନଙ୍କର ଅନୁକୂଳ ମନୋଭାବ ନଥିବାରୁ ମହିଳାମାନେ ବିଶେଷତଃ କନ୍ୟାସନ୍ତାନଟି ବିଶେଷ କ୍ଷତିଗ୍ରସ୍ତ ହୋଇଥାଏ । ସେଥିପାଇଁ ପୁରୁଷମାନେ ସେମାନଙ୍କ ମନୋଭାବ ଓ ବ୍ୟବହାରରେ ଯଥାଯଥ ପରିବର୍ତ୍ତନ ଆଣି ନାରୀର

ପ୍ରଜନନ ସ୍ୱାସ୍ଥ୍ୟ, ଅଧିକାର ଆଦି ସମ୍ପର୍କରେ ସଚେତନ ହେବା ଆବଶ୍ୟକ । ସେମାନେ ନିଜକୁ ସମସ୍ତ ଘରକରଣା କାମରେ ନିୟୋଜନ କରିବା ଆବଶ୍ୟକ । ଏପରି କଲେ ଘରେ ସମସ୍ତେ ସମସ୍ତଙ୍କର ଦାୟିତ୍ୱ ସଂପର୍କରେ ଉତ୍ତମ ଭାବେ ବୁଝିପାରିବେ । ନାରୀ ଓ ପୁରୁଷଙ୍କ ମଧ୍ୟରେ ଉତ୍ତମ ବୁଝାମଣା ଆସିପାରିବ ଓ ସେମାନଙ୍କର ପାରସ୍ପରିକ ସଂପର୍କ ମଧୁମୟ ହେବ ।

## ପ୍ରଶିକ୍ଷଣ ସଂପର୍କୀୟ କାର୍ଯ୍ୟ :

ପ୍ରଶିକ୍ଷଣର ବିଷୟବସ୍ତୁ ଆଲୋଚନା ସମୟରେ ନିମ୍ନଲିଖିତ ବିଭାବ ଉପରେ ପ୍ରଶିକ୍ଷାର୍ଥୀଙ୍କ ସହିତ ଆଲୋଚନା କରାଯାଇପାରେ :

- ପରିବାର ଓ ବିବାହର ଗୁରୁତ୍ୱ, ପରିବାରର ଆକାରର ପରିବର୍ତ୍ତନ, ପରିବାରରେ ଲିଙ୍ଗଗତ ଭେଦଭାବ ଥାଇ କରାଯାଇଥିବା କାର୍ଯ୍ୟ ।
- ପରିବାରରେ ମିଳିମିଶି କରିବାକୁ ଥିବା କାର୍ଯ୍ୟ, ସମସ୍ତଙ୍କ ପାଇଁ ସମାନ ସୁବିଧା ଓ ସୁଯୋଗ, ନିଷ୍ପତ୍ତି ନେବାରେ ମହିଳାମାନଙ୍କ ସହିତ ଆଲୋଚନାର ଆବଶ୍ୟକତା ।
- ପରିବାରର ଆୟ ନିମନ୍ତେ ମହିଳାମାନଙ୍କର ଦାନ, ଘରେ ଓ ବାହାରେ କରୁଥିବା କାର୍ଯ୍ୟ ।
- ପରିବାରରେ ମହିଳା ଓ କନ୍ୟା ସନ୍ତାନର ପଦ ମର୍ଯ୍ୟାଦା, କନ୍ୟା ସନ୍ତାନର ସ୍ୱାସ୍ଥ୍ୟ, ଶିକ୍ଷା ଓ ସର୍ବାଙ୍ଗୀନ ଉନ୍ନତିର ସହାୟକ ହେଉଥିବା ବିଭିନ୍ନ କାର୍ଯ୍ୟ ।
- ପରିବାରର ମୌଳିକ ଆବଶ୍ୟକତା ଯଥା - ବସବାସ, ଖାଦ୍ୟ, ବସ୍ତ୍ର, ସ୍ୱାସ୍ଥ୍ୟ ଆଦି ସଂପର୍କୀୟ ଆଲୋଚନା ।

- ମହିଳାମାନେ ସମ୍ମୁଖୀନ ହେଉଥିବା ସାମାଜିକ ଓ ଘରୋଇ ସମସ୍ୟା ଯଥା - ଯୌତୁକ, ଲିଙ୍ଗଗତ ଶୋଷଣ ଆଦି ସମ୍ପର୍କରେ ଆଲୋଚନା ଓ ଉପଯୁକ୍ତ ସାମାଜିକ ବାତାବରଣ ସୃଷ୍ଟି ନିମନ୍ତେ କାର୍ଯ୍ୟ ।

## ପ୍ରଶିକ୍ଷଣ ପରବର୍ତ୍ତୀ କାର୍ଯ୍ୟ :-

1. ପରିବାରର ଆକାର ଓ କଲ୍ୟାଣ ସଂପର୍କୀୟ ଆଲୋଚନା ନିମନ୍ତେ ଆଲୋଚନା କେନ୍ଦ୍ରକୁ ପରିବାରର ସଦସ୍ୟମାନଙ୍କୁ ନିମନ୍ତ୍ରଣ ।
2. ମହିଳା ଓ କନ୍ୟାସନ୍ତାନଙ୍କ ଅଧିକାର ସଂପର୍କରେ ଆଲୋଚନାଚକ୍ରର ଆୟୋଜନ ।
3. ଏକ ଶୋଷଣମୁକ୍ତ ପରିବାରର ସୃଷ୍ଟି ନିମନ୍ତେ ଗ୍ରାମ ଭିତ୍ତିକ ସଚେତନତା ସୃଷ୍ଟି ।

## ମୂଲ୍ୟାୟନ :

1. ପରିବାର କହିଲେ କ'ଣ ବୁଝାଯାଏ ?
2. ପରିବାରରେ ନିଷ୍ପତ୍ତି କିଭଳି ନିଆଯିବା ଆବଶ୍ୟକ ?
3. ପରିବାରର କଲ୍ୟାଣ କେଉଁସବୁ ଉପାଦାନ ଉପରେ ନିର୍ଭର କରେ ?
4. ପରିବାରର ଅର୍ଥନୈତିକ ଉନ୍ନତି କେଉଁମାନଙ୍କ ଉପରେ ନିର୍ଭର କରିଥାଏ ?

## ପ୍ରଜନନ ଅଧିକାର ଓ ପ୍ରଜନନ ସ୍ୱାସ୍ଥ୍ୟ :

ଜନସଂଖ୍ୟାରେ ସ୍ଥିରତା ଆଣିବା ପାଇଁ ପୃଥିବୀର ଅଧିକାଂଶ ଦେଶରେ ପରିବାର ନିୟନ୍ତ୍ରଣ କାର୍ଯ୍ୟକ୍ରମ କାର୍ଯ୍ୟକାରୀ ହେଉଛି । ପରିବାର ନିୟନ୍ତ୍ରଣ କାର୍ଯ୍ୟକ୍ରମ ଦ୍ୱାରା ଆଶାନୁରୂପ ସଫଳତା ମିଳିପାରିନି । ତେଣୁ ପରିବାର ନିୟନ୍ତ୍ରଣ କାର୍ଯ୍ୟକ୍ରମର ଆଭିମୁଖ୍ୟରେ କିଛିଟା ପରିବର୍ତ୍ତନ ଅଣାଯାଇ ପରିବାର କଲ୍ୟାଣ କାର୍ଯ୍ୟକ୍ରମ କାର୍ଯ୍ୟକାରୀ ହେଉଛି । ପରିବାରର କଲ୍ୟାଣ ସାଧିତ ହେଲେ ଦେଶର କଲ୍ୟାଣ ସାଧିତ ହେବ ।

ପରିବାରର କଲ୍ୟାଣ ନିମନ୍ତେ ପ୍ରତ୍ୟେକ ବ୍ୟକ୍ତି ପ୍ରଜନନ ଅଧିକାର କ'ଣ ସେ ସଂପର୍କରେ ପରିଚିତ ହେବା ଆବଶ୍ୟକ । ପ୍ରଜନନ ଅଧିକାର ଜାଣିଲେ ହିଁ ଜଣେ ପ୍ରଜନନ ସ୍ୱାସ୍ଥ୍ୟ ରକ୍ଷା ଦିଗରେ ଯତ୍ନବାନ୍ ହେବ ।

୧୯୨୪ ମସିହାରେ କାଇରୋଠାରେ ଅନୁଷ୍ଠିତ ଆନ୍ତର୍ଜାତିକ ସମ୍ମିଳନୀରେ ଆଲୋଚ୍ୟ ବିଷୟବସ୍ତୁ ମଧ୍ୟରେ ପ୍ରଜନନ ଅଧିକାର ଓ ପ୍ରଜନନ ସ୍ୱାସ୍ଥ୍ୟ ଧ୍ୟାନ ଆକର୍ଷଣ କରିଥିଲା । ଏଥିରେ ବିଶେଷତଃ ମହିଳାମାନଙ୍କର ପ୍ରଜନନ ସ୍ୱାସ୍ଥ୍ୟ ଓ ଅଧିକାର ସଂପର୍କରେ ଗୁରୁତ୍ୱ ଆରୋପ କରାଯାଇଥିଲା ।

ଯଦିଓ ପ୍ରଜନନ ସ୍ୱାସ୍ଥ୍ୟ ଓ ଅଧିକାର ମୂଳତଃ ମହିଳା ସଂପର୍କିତ ଏକ ବିଷୟବସ୍ତୁ ରୂପେ ଗୁରୁତ୍ୱ ଲାଭ କରିଛି, ତଥାପି ଏ ସଂପର୍କରେ ପୁରୁଷମାନଙ୍କୁ ଅବଗତ କରାଇବା ମଧ୍ୟ ଅପରିହାର୍ଯ୍ୟ ହୋଇଛି ; କାରଣ ପୁରୁଷମାନେ ସହାୟତା କଲେ ମହିଳାମାନଙ୍କର ଅଧିକାର ଓ ପ୍ରଜନନ ସ୍ୱାସ୍ଥ୍ୟ ଅକ୍ଷୁଣ୍ଣ ରହିବ । ସେମାନଙ୍କ ମଧ୍ୟରେ ସୁସମ୍ପର୍କ ପ୍ରତିଷ୍ଠିତ ହେବ । ସୁ ସମ୍ପର୍କ ହିଁ ସେମାନଙ୍କ ପାଇଁ ଶୃଙ୍ଖଳିତ ଯୌନଜୀବନ ଆଣିଦେବ ଓ ପ୍ରଜନନ ସଂପର୍କୀୟ ଦାୟିତ୍ୱ ସଂପନ୍ନ ନିଷ୍ପତ୍ତି ନେବାରେ ସହାୟତା କରିବ ।

## ପ୍ରଜନନ ଅଧିକାର :

1. ପ୍ରଜନନ ଅଧିକାର ଏକ ମାନବିକ ଅଧିକାର । ମଣିଷର ଜୀବନ କାଳ ମଧ୍ୟରେ ଏହା ସାମଗ୍ରିକ ସ୍ୱାସ୍ଥ୍ୟର ଏକ ଅଂଶ

ବିଶେଷ । ଏଥିରେ ପ୍ରଜନନ ଯୌନ ସ୍ୱାସ୍ଥ୍ୟ ଅନ୍ତର୍ଭୁକ୍ତ ।

2. ନିଷ୍ପତ୍ତି ନେବାର ଅଧିକାର; ଏହାର ବିଷୟବସ୍ତୁ ଭାବେ ବିବାହ ସଂପର୍କୀୟ ବିଷୟବସ୍ତୁ, ପରିବାର ଗଠନ ଏବଂ ପରିବାରର ସଂଖ୍ୟା ନିର୍ଦ୍ଧାରଣ, ଦୁଇଟି ସନ୍ତାନ ମଧ୍ୟରେ ସମୟଗତ ବ୍ୟବଧାନ ରଖିବାର ନିଷ୍ପତ୍ତି ଆଦି ଅନ୍ତର୍ଭୁକ୍ତ ।

3. ଯୌନ ଓ ପ୍ରଜନନ ନିରାପତ୍ତା ସଂପର୍କୀୟ ଅଧିକାର ।

4. ଏଥିରେ ଯୌନ ସଂପର୍କିତ ହିଂସ୍ର ଆଚରଣରୁ ମୁକ୍ତି ସଂପର୍କୀୟ ବିଷୟବସ୍ତୁ ଅନ୍ତର୍ଭୁକ୍ତ ।

5. ସନ୍ତାନ ଜନ୍ମ ଓ ଯୌନଜୀବନ ସଂପର୍କୀୟ ନିଷ୍ପତ୍ତି ନେବାର ଅଧିକାର ।

6. ସନ୍ତାନ ଜନ୍ମ ସଂପର୍କରେ ନିଷ୍ପତ୍ତି ନେବା ।

7. ସମସ୍ତ ପ୍ରକାର ସ୍ୱାସ୍ଥ୍ୟ ସେବା ତଥା ଜ୍ଞାନର ଅଧିକାର ।

## ପ୍ରଜନନ ସ୍ୱାସ୍ଥ୍ୟ :

ପ୍ରଜନନ ସ୍ୱାସ୍ଥ୍ୟ କହିଲେ କେବଳ ରୋଗ କିମ୍ବା ସାମର୍ଥ୍ୟ ହୀନତା ବୁଝାଏ ନାହିଁ । ଏହା ପ୍ରଜନନ ପ୍ରଣାଳୀ, ଏହାର କାର୍ଯ୍ୟକାରିତା ଏବଂ ପ୍ରକ୍ରିୟା ସଂପର୍କୀୟ ଶାରୀରିକ, ମାନସିକ ଏବଂ ସାମାଜିକ ପରିପୂର୍ଣ୍ଣତାକୁ ବୁଝାଇଥାଏ ।

ପ୍ରଜନନ ସ୍ୱାସ୍ଥ୍ୟ ସାଧାରଣତଃ ଶିଶୁର ଜନ୍ମ ପୂର୍ବରୁ ଆରମ୍ଭ ହୋଇଥାଏ । ଏହା କୈଶୋରାବସ୍ଥାରେ ପରିପକ୍ୱତା ହାସଲ କରିଥାଏ ଏବଂ ପ୍ରଜନନ ସମୟ ଓ ତା'ଠାରୁ ଅଧିକ କାଳ ପର୍ଯ୍ୟନ୍ତ ପରିବ୍ୟାପ୍ତ ହୋଇଥାଏ । ପ୍ରଜନନ ସ୍ୱାସ୍ଥ୍ୟ ମଧ୍ୟ ଯୌନ ସ୍ୱାସ୍ଥ୍ୟ ସଂପର୍କୀୟ ବିଷୟବସ୍ତୁ ଓ ତତ୍‌ସଂପର୍କୀୟ ଯତ୍ନର ଆଧାରଭୁକ୍ତ ଅଟେ ।

ସୁସ୍ଥ ଯୌନଜୀବନ ନିମନ୍ତେ ସୁସ୍ଥ ପ୍ରଜନନ ସ୍ୱାସ୍ଥ୍ୟ ଆବଶ୍ୟକ । ଏହା ବିନା ମଣିଷ ଜୀବନରେ ବିଫଳତା ଆସିଥାଏ ।

## ବିଷୟବସ୍ତୁ :

ପ୍ରଜନନ ସ୍ୱାସ୍ଥ୍ୟ ଓ ଅଧିକାରର ମୁଖ୍ୟତଃ ଜୀବନର ତିନୋଟି ବିଭାଗ ସହିତ ସମ୍ପର୍କିତ । ସେଗୁଡ଼ିକ ହେଲା ପରିବା ନିୟୋଜନ, ଯୌନ ଜୀବନ ଓ ସ୍ତ୍ରୀ ଲୋକମାନଙ୍କର ପ୍ରଜନନ ସ୍ୱାସ୍ଥ୍ୟ ।

## ଲକ୍ଷ୍ୟ :

1. ଲୋକମାନଙ୍କୁ ବିଶେଷତଃ ସ୍ତ୍ରୀ ଲୋକମାନଙ୍କୁ ପ୍ରଜନନ ସ୍ୱାସ୍ଥ୍ୟ ଓ ଅଧିକାର ସଂପର୍କରେ ଜଣାଇବା ।
2. ସର୍ବୋତ୍ତମ ପ୍ରଜନନ ସଂପର୍କୀୟ ଯତ୍ନ ବିଶେଷତଃ ଗର୍ଭଧାରଣ ଏବଂ ଶିଶୁର ଜନ୍ମ ସମୟରେ ଯୋଗାଇଦେବା ।
3. ପୁରୁଷ ଓ ମହିଳାମାନଙ୍କୁ ପରିବାର ନିୟୋଜନ ସଂପର୍କରେ ନିରାପଦ, ଫଳପ୍ରଦ ଏବଂ ପରିବାର ନିୟୋଜନ ସଂପର୍କୀୟ ପ୍ରଣାଳୀ ସଂପର୍କରେ ଅବଗତ କରାଇବା ଏବଂ ସେମାନେ କିପରି ସନ୍ତାନ ଜନ୍ମକୁ ନିୟନ୍ତ୍ରଣ କରିପାରିବେ ସେ ସଂପର୍କୀୟ ପଦ୍ଧତି ସଂପର୍କରେ ଅବଗତ କରାଇବା ।
4. ଲୋକମାନଙ୍କୁ ସେମାନଙ୍କ ଯୌନଜୀବନ ଏବଂ ଶାରୀରିକ ଅଙ୍ଗ ପ୍ରତ୍ୟଙ୍ଗ ସଂପର୍କରେ ସଚେତନ କରାଇବା । ଏପରି ସଚେତନତା ସେମାନଙ୍କୁ ପ୍ରଜନନ ସ୍ୱାସ୍ଥ୍ୟ ଏବଂ ସୁସ୍ଥ ଯୌନ ଜୀବନ ଯାପନ କରିବାରେ ସହାୟତା କରିବ ।

## ପରିବାର ନିୟନ୍ତ୍ରଣ ସଂପର୍କୀୟ ତଥ୍ୟ :

ଭାରତରରେ ଶିଶୁ ମୃତ୍ୟୁହାର ଓ ମାତୃ ମୃତ୍ୟୁହାର ଖୁବ୍ ଅଧିକ । ଉପଯୁକ୍ତ ଶିକ୍ଷା, ସ୍ୱାସ୍ଥ୍ୟ ସଂପର୍କୀୟ କାର୍ଯ୍ୟକ୍ରମ ଓ ଯତ୍ନର ଅଭାବରୁ ଅଧିକାଂଶ ଶିଶୁ ଓ ମା' ଅକାଳରେ ଜୀବନ ଦେଉଛନ୍ତି ।

ଲୋକମାନଙ୍କ ମଧ୍ୟରେ ନିରାପଦ ସନ୍ତାନ ପ୍ରସବ, ନିରାପଦ ମାତୃତ୍ୱ ଏବଂ ନିରାପଦ ପରିବାର ନିୟୋଜନ କାର୍ଯ୍ୟକ୍ରମ ଗ୍ରହଣ ଲାଗି ତଥ୍ୟ ଶିକ୍ଷା · ଯୋଗାଯୋଗ ମାଧ୍ୟମରେ ସଚେତନତା ଦେବା ନିତାନ୍ତ ଆବଶ୍ୟକ ।

## ଯୌନଜୀବନ :

ପ୍ରଜନନ ସ୍ୱାସ୍ଥ୍ୟ ସହିତ ସ୍ୱାସ୍ଥ୍ୟପ୍ରଦ ଯୌନଜୀବନ ଅଙ୍ଗାଙ୍ଗୀଭାବେ ଜଡ଼ିତ । ଏତଦ୍‌ବ୍ୟତୀତ କିଶୋର କିଶୋରୀମାନଙ୍କ ପ୍ରଜନନ ସ୍ୱାସ୍ଥ୍ୟ ଠିକ୍ ରହିଲେ ଆମ ସମାଜ ଉପଯୁକ୍ତ ଦାୟାଦ ପାଇ ପାରିବେ । ସେଥିପାଇଁ କୈଶୋର ଶିକ୍ଷା ମାଧମରେ ସେମାନଙ୍କୁ ଭବିଷ୍ୟତ ଯୌନ ଜୀବନ, ଅବାଞ୍ଛିତ ଗର୍ଭଧାରଣରୁ ରକ୍ଷା, ଯୌନରୋଗ, ଏଚ୍.ଆଇ.ଭି./ଏଡ଼ସ୍ ସଂକ୍ରମଣରୁ ରକ୍ଷା ସମ୍ପର୍କରେ ଶିକ୍ଷାଦାନ ଦେବା ନିତାନ୍ତ ଜରୁରୀ । ଉପଯୁକ୍ତ ଶିକ୍ଷା ଓ ସଚେତନତା ସେମାନଙ୍କ ମନରେ ଦାୟିତ୍ୱ ବୋଧ ଓ ମାନସିକ ସ୍ଥିରତା ସୃଷ୍ଟି କରିପାରିବ ।

## ମହିଳାମାନଙ୍କର ପ୍ରଜନନ ସ୍ୱାସ୍ଥ୍ୟ :

ପ୍ରଜନନ ସ୍ୱାସ୍ଥ୍ୟ ଦୃଷ୍ଟିକୋଣରୁ ମହିଳାମାନେ ପୁରୁଷମାନଙ୍କ ଅପେକ୍ଷା ଅଧିକ ଅସୁବିଧା ଓ ସଂକଟର ସମ୍ମୁଖୀନ ହୋଇଥାନ୍ତି । ଗର୍ଭଧାରଣ, ପ୍ରସବ,ଗର୍ଭପାତ ଆଦି ଯୋଗୁଁ ସେମାନଙ୍କର ସ୍ୱାସ୍ଥ୍ୟ ଓ ଜୀବନ ବିଭିନ୍ନ ସମୟରେ ବିପଦପୂର୍ଣ୍ଣ ଅବସ୍ଥା ଦେଇ ଗତି କରିଥାଏ ।

ଏତଦ୍‌ବ୍ୟତୀତ ପ୍ରଜନନ ପଥ ସଂକ୍ରମିତ ହେବା ଦ୍ୱାରା ଅଧିକାଂଶ ମହିଳା ଉପଯୁକ୍ତ ଚିକିତ୍ସାର ଅଭାବରୁ ହଇରାଣ ହରକତ ହୋଇଥାନ୍ତି । କର୍କଟ ରୋଗ ମଧ୍ୟ ମହିଳାମାନଙ୍କ ମଧ୍ୟରେ ଅଧିକ ଦେଖାଯାଇଥାଏ । ଋତୁସ୍ରାବ ସମୟରେ କିପରି ଯତ୍ନ ନିଆଯିବ ସେ ସଂପର୍କରେ ମଧ୍ୟ ଅଧିକାଂଶ ମହିଳା ସଚେତନ ନଥାନ୍ତି ।

ଉପରୋକ୍ତ ସମସ୍ୟାଗୁଡ଼ିକର ସମାଧାନ ଲାଗି ମହିଳାମାନଙ୍କୁ ସେମାନେ ସମ୍ମୁଖୀନ ହେଉଥିବା ଶାରୀରିକ ସମସ୍ୟା ସଂପର୍କରେ ଓ ତତ୍‌ସଂପର୍କୀୟ ଚିକିତ୍ସା ସଂପର୍କରେ ଅବଗତ କରାଇବା ଦରକାର । ଅବାଞ୍ଛିତ ଗର୍ଭଧାରଣ ରୋକିବା ଓ ତତ୍ ସଂପର୍କୀୟ ଚିକିତ୍ସା ମଧ୍ୟ ଯୋଗାଇଦେବା ଦରକାର ।

## ପ୍ରଶିକ୍ଷଣ ସଂପର୍କୀୟ କାର୍ଯ୍ୟ :

- ପୁରୁଷ, ମହିଳା ଓ କିଶୋର କିଶୋରୀମାନଙ୍କ ସହିତ ଆଲୋଚନା କରି ପ୍ରଜନନ ସମସ୍ୟାର ସମାଧାନ ଓ ତତ୍ ସଂପର୍କୀୟ କାର୍ଯ୍ୟ ବିବରଣୀ ପ୍ରସ୍ତୁତ କରିବା ।
- ପୁରୁଷ ଓ ସ୍ତ୍ରୀମାନଙ୍କୁ ପ୍ରଶିକ୍ଷଣ ଦେବାଲାଗି ସ୍ୱତନ୍ତ୍ର କାର୍ଯ୍ୟକ୍ରମ ପ୍ରସ୍ତୁତ କରିବା ।
- ପ୍ରଜନନ ଅଧିକାର ଓ ସ୍ୱାସ୍ଥ୍ୟ ସଂପର୍କୀୟ ବିଭିନ୍ନ ଶିକ୍ଷଣ ସାମଗ୍ରୀ ମାଧ୍ୟମରେ ପ୍ରଜନନ ଅଧିକାର ଓ ସ୍ୱାସ୍ଥ୍ୟ ସଂପର୍କରେ ପୁରୁଷ ଓ ମହିଳାମାନଙ୍କୁ ବୁଝେଇବା ।
- ପ୍ରଜନନ ପଥ ସଂକ୍ରମଣ ଓ ଯୌନ ରୋଗ ସଂପର୍କରେ ବିଭିନ୍ନ ସହାୟକ ସାମଗ୍ରୀ ମାଧ୍ୟମରେ ବୁଝାଇବା ଏବଂ ସାବଧାନତା ଅବଲମ୍ବନ ନିମନ୍ତେ ନେବାକୁ ଥିବା ପଦକ୍ଷେପ ସଂପର୍କରେ ଅବଗତ କରାଇବା ।

## ମୂଲ୍ୟାୟନ :

1. ପ୍ରଜନନ ସ୍ୱାସ୍ଥ୍ୟ କହିଲେ କ'ଣ ବୁଝାଯାଏ ?
2. ପ୍ରଜନନ ଅଧିକାର କହିଲେ କ'ଣ ବୁଝାଯାଏ ?
3. ଉନ୍ନତ ଜୀବନ ଯାପନ କ୍ଷେତ୍ରରେ ପ୍ରଜନନ ସ୍ୱାସ୍ଥ୍ୟର ଆବଶ୍ୟକତା କାହିଁକି ଆବଶ୍ୟକ ହୁଏ ?
4. ମହିଳାମାନଙ୍କର ପ୍ରଜନନ ସମସ୍ୟା ଗୁଡ଼ିକ ଉଲ୍ଲେଖ କର ଓ ସେଗୁଡ଼ିକର ସମାଧାନ ସଂପର୍କରେ ସୂଚନା ଦିଅ ।

## *ଜନସଂଖ୍ୟା : ସ୍ଥାନାନ୍ତର ଓ ସହରୀକରଣ*

ବିକାଶର ଧାରାକୁ ଅବ୍ୟାହତ ରଖିବା ଦିଗରେ ଜନସଂଖ୍ୟା, ସ୍ଥାନାନ୍ତର ଓ ସହରୀକରଣର ଯଥେଷ୍ଟ ଭୂମିକା ଅଛି । ଲୋକେ ବିଭିନ୍ନ କାରଣରୁ ଗ୍ରାମାଞ୍ଚଳଛାଡ଼ି ସହରାଭିମୁଖୀ ହୋଇଥାନ୍ତି । ଲୋକମାନଙ୍କର ଏତାଦୃଶ କାର୍ଯ୍ୟଲାଗି ଗ୍ରାମାଞ୍ଚଳର ସ୍ଥିତି କ୍ଷତିଗ୍ରସ୍ତ ହେଲାବେଳେ ସହରର ସ୍ଥିତିରେ ଉନ୍ନତି ଘଟିଲେ ମଧ୍ୟ ଅତ୍ୟଧିକ ସ୍ଥାନାନ୍ତର ଯୋଗୁଁ ସହରର ବିକାଶ କ୍ଷତିଗ୍ରସ୍ତ ହୋଇଥାଏ । ସହରରେ ଅସ୍ୱାଭାବିକ ଭାବେ ଝୋପଡ଼ି ଘରମାନ ଗଢ଼ି ଉଠେ । ନିମ୍ନମାନର ରହଣି ଯୋଗୁଁ ସ୍ୱାସ୍ଥ୍ୟଗତ ସମସ୍ୟା ଦେଖାଯାଏ, ସ୍ଥାନ ବିଶେଷରେ ପାନୀୟ ଜଳର ଘୋର ଅଭାବ ଦେଖାଯାଏ । ନାଳ, ନର୍ଦ୍ଦମା ଯୋଗୁଁ ସଂକ୍ରାମକ ରୋଗ ବ୍ୟାପିବାର ଅଧିକ ସମ୍ଭାବନା ଥାଏ ।

ମଣିଷ ସମାଜକୁ ଦୀର୍ଘଦିନ ପାଇଁ ବଞ୍ଚେଇ ରଖିବା ପାଇଁ ଗୋଟିଏ ସ୍ଥାନରୁ ଅନ୍ୟସ୍ଥାନକୁ ଯୁକ୍ତିଯୁକ୍ତ ଭାବେ ସ୍ଥାନାନ୍ତର ହେବା ଆବଶ୍ୟକ । ବିକାଶୋନ୍ମୁଖୀ ସହରଗୁଡ଼ିକ ଗ୍ରାମାଞ୍ଚଳର ଉନ୍ନତି ପାଇଁ ଧ୍ୟାନ ଦେବା ଆବଶ୍ୟକ । ଏପରି ହେଲେ ବିକାଶ ନିରବଚ୍ଛିନ୍ନ ଓ ଅବ୍ୟାହତ ହେବ ।

**ଲକ୍ଷ୍ୟ :**

1. ସ୍ଥାନାନ୍ତରର କାରଣ ଓ ପରିଣାମ ସଂପର୍କରେ ହୃଦୟଙ୍ଗମ କରିବା ।
2. ଗ୍ରାମାଞ୍ଚଳର ଉନ୍ନତି ଓ ବିକାଶ ଦିଗରେ ସହରର ଭୂମିକା ଜାଣିବା ।
3. ଗ୍ରାମାଞ୍ଚଳ ଓ ସହରାଞ୍ଚଳର ଉନ୍ନତି ଦୃଷ୍ଟିରୁ ସ୍ଥାନାନ୍ତରର ଯଥାଯଥ ଆବଶ୍ୟକତା ହୃଦୟଙ୍ଗମ କରିବା ।

**ବିଷୟବସ୍ତୁ :**

ଅର୍ଥନୈତିକ ସମୃଦ୍ଧି ଓ ବିକାଶ ଦୃଷ୍ଟିରୁ ସହରୀକରଣ ପୃଥିବୀର ସମସ୍ତ ଦେଶରେ ଅପରିହାର୍ଯ୍ୟ ହୋଇଛି । ତେଣୁ ଗ୍ରାମାଞ୍ଚଳର ଲୋକେ କାମଧନ୍ଦା ନପାଇ ନିଜର ଦାନାକନା ଗଣ୍ଡାକ ଯୋଗାଡ଼ ନିମନ୍ତେ ସହରକୁ ଯାଉଛନ୍ତି । ସେମାନେ ସେଠାରେ ଥିବା ବିଭିନ୍ନ କଳକାରଖାନାରେ କାମ କରୁଛନ୍ତି । ଆବଶ୍ୟକତାରୁ ଅଧିକ ଲୋକ ହେବା ଯୋଗୁଁ ସହରରେ ଛୋଟ ଛୋଟ ଝୋପଡ଼ି ଅଞ୍ଚଳ ଦେଖାଯାଉଛି । ସେହିସବୁ ଝୋପଡ଼ି ଅଞ୍ଚଳରେ ବସବାସ କରିବା ସ୍ୱାସ୍ଥ୍ୟପ୍ରଦ ହେଉନାହିଁ । ଅଧିକ ଜନବସତି ଯୋଗୁଁ ଶିକ୍ଷା, ସ୍ୱାସ୍ଥ୍ୟ, ଖାଦ୍ୟ, ବସ୍ତ୍ର ଆଦିର ସମସ୍ୟା କ୍ରମଶଃ ଲୋକମାନଙ୍କର ଗୁଣାତ୍ମକ ଜୀବନକୁ ନଷ୍ଟ କରୁଛି ।

ଗୁଣାତ୍ମକ ଜୀବନ ଦୃଷ୍ଟିକୋଣରୁ କୌଣସି ମତେ ସ୍ଥାନାନ୍ତର ଗମନ ପ୍ରକ୍ରିୟାର କାରଣ ଓ ସମସ୍ୟାର ସମାଧାନ ନିତାନ୍ତ ଆବଶ୍ୟକ । ବିକାଶର ସହାୟକ ହେଉଥିବା ସମ୍ବଳର ମଧ୍ୟ ଆଞ୍ଚଳିକ ଭିତ୍ତିରେ ସୁବଣ୍ଟନ ହେବା ଆବଶ୍ୟକ । ତେଣୁ ବିଭିନ୍ନ ରାଷ୍ଟ୍ର ଜନସଂଖ୍ୟାର ସୁବଣ୍ଟନ ଉପରେ ଗୁରୁତ୍ୱ ଦେବା ସହିତ ମଧ୍ୟମ ଧରଣର ସହର ଗୁଡ଼ିକ ଯେପରି ଗଢ଼ିଉଠେ ସେଥିପାଇଁ ଯତ୍ନବାନ୍ ହେବା ଆବଶ୍ୟକ । ସେହିସବୁ ସହରଗୁଡ଼ିକ ଗ୍ରାମାଞ୍ଚଳର ଉନ୍ନତିର ମୂଳ

କ୍ଷେତ୍ରରୂପେ କାମ କରିବେ ଓ ଗ୍ରାମାଞ୍ଚଳର ଉନ୍ନତି ପ୍ରତି ଦୃଷ୍ଟି ଦେବେ । ଗ୍ରାମାଞ୍ଚଳର ଲୋକେ କିପରି ଜମି ଉପରେ ନିଜର ସତ୍ତ୍ୱ ପାଇପାରିବେ, ଗ୍ରାମାଞ୍ଚଳର ଅର୍ଥନୀତିର ଉନ୍ନତି ନିମନ୍ତେ ବିଭିନ୍ନ ସଂସ୍ଥା ତରଫରୁ ସହଯୋଗ ପାଇପାରିବେ ସେଥିପାଇଁ ମଧ୍ୟ ଦୃଷ୍ଟି ଦିଆଯିବା ଆବଶ୍ୟକ ।

ବିକାଶ ଅବ୍ୟାହତ ରଖିବା ପାଇଁ ବିକାଶଶୀଳ ଦେଶର ମ୍ୟୁନିସିପାଲିଟି ବିଜ୍ଞାପିତ ଅଞ୍ଚଳ ଓ ନିଗମଗୁଡ଼ିକର ମଧ୍ୟ ଯଥେଷ୍ଟ ଭୂମିକା ରହିଛି । ସେହିସବୁ ଅନୁଷ୍ଠାନ ଗୁଡ଼ିକ ସ୍ଥାନାନ୍ତରରେ ସହରକୁ ଆସିଥିବା ଅଧିବାସୀମାନଙ୍କର ଶିକ୍ଷା, ସ୍ୱାସ୍ଥ୍ୟ, ବୃତ୍ତି ଆଦି ପ୍ରତି ଧ୍ୟାନ ଦେବା ଆବଶ୍ୟକ । ସବୁଶ୍ରେଣୀର ଲୋକଙ୍କ ହିତପାଇଁ ଅର୍ଥର ସମବଣ୍ଟନ ବିଭିନ୍ନ କାର୍ଯ୍ୟକ୍ରମ ମଧ୍ୟମରେ କରାଯାଇପାରିବ ।

ଏତଦ୍‌ବ୍ୟତୀତ ନିଜଦେଶରେ, ନିଜ ରାଜ୍ୟରେ, କିମ୍ବା ନିଜ ପରିବେଶ ମଧ୍ୟରେ ବାସଚ୍ୟୁତ ହୋଇଥିବା ଲୋକମାନଙ୍କର ଥଇଥାନ ନିମନ୍ତେ ସମସ୍ତେ ପ୍ରଚେଷ୍ଟା କରିବା ଆବଶ୍ୟକ । ସେମାନେ ବାସଚ୍ୟୁତ ହେବାର କାରଣ ଅନୁଧ୍ୟାନ କରି ସେହିସବୁ କାରଣ ଗୁଡ଼ିକର ନିରାକରଣ କଲେ ବିକାଶ ପଥ ଉନ୍ମୁକ୍ତ ହେବ ।

ତେଣୁ ପ୍ରତ୍ୟେକ ବ୍ୟକ୍ତି ଓ ଦେଶ ଆଭ୍ୟନ୍ତରୀଣ ବାସଚ୍ୟୁତ ସମସ୍ୟାର ଯତ୍ନ ସହିତ ପରିବେଶର ସୁରକ୍ଷା, ପ୍ରାକୃତିକ ବିପର୍ଯ୍ୟୟର ମୁକାବିଲା ନିମନ୍ତେ କାର୍ଯ୍ୟକରିବା ଆବଶ୍ୟକ । ସେହିସବୁ ଲୋକମାନଙ୍କର ଶିକ୍ଷା, ସ୍ୱାସ୍ଥ୍ୟ, ଆମୋଦ ପ୍ରମୋଦ, ସଂସ୍କୃତିର ବିକାଶ ପ୍ରତି ଧ୍ୟାନ ଦେଲେ ସେମାନଙ୍କର ଦୁଃଖ ଲାଘବ ହେବ । ଏତାଦୃଶ କାର୍ଯ୍ୟ ମଧ୍ୟ ବିକାଶର ଧାରାକୁ ଅବ୍ୟାହତ ରଖିବାରେ ସହାୟକ ହେବ ।

## ପ୍ରଶିକ୍ଷଣ ଭିତ୍ତିକ କାର୍ଯ୍ୟକ୍ରମ :

1. ନିଜ ଦେଶ ଓ ରାଜ୍ୟରେ ସ୍ଥାନାନ୍ତର ଯୋଗୁଁ ଉପୁଜୁଥିବା ସମସ୍ୟାର ଆଲୋଚନା ।

2. ସହରଗୁଡ଼ିକ କିପରି ଗ୍ରାମାଞ୍ଚଳର ହିତ ସୁରକ୍ଷା କରିପାରିବେ ସେ ସଂପର୍କରେ ବିଭିନ୍ନ ଦୃଷ୍ଟିକୋଣରୁ ଆଲୋଚନା ଓ ତାଲିକା ପ୍ରସ୍ତୁତି ।

3. ଝୋପଡ଼ି ବାସିନ୍ଦାଙ୍କ ଉନ୍ନତି ନିମନ୍ତେ ଏକ କାର୍ଯ୍ୟ ଚିଠାର ପ୍ରସ୍ତୁତି ।

4. ବାସଚ୍ୟୁତ ଲୋକମାନଙ୍କର ଥଇଥାନ ନିମନ୍ତେ ନେବାକୁ ଥିବା ବିଭିନ୍ନ ପଦକ୍ଷେପ ସଂପର୍କରେ ଆଲୋଚନା ।

## ପ୍ରଶିକ୍ଷଣ ପରବର୍ତ୍ତୀ କାର୍ଯ୍ୟକ୍ରମ :

1. ସହରାଞ୍ଚଳ ଲୋକମାନଙ୍କୁ ମୌଳିକ ସୁବିଧାସୁଯୋଗ ଯୋଗାଇ ଦେବା ଲାଗି ବିଭିନ୍ନ କାର୍ଯ୍ୟକ୍ରମ ଯଥା : ବିଶୁଦ୍ଧ ପାନୀୟ ଜଳ, ସ୍ୱାସ୍ଥ୍ୟକର ବସବାସ, ଶିକ୍ଷା ଓ ସ୍ୱାସ୍ଥ୍ୟ ସଂପର୍କୀୟ ବିଭିନ୍ନ ପଦକ୍ଷେପ ।

2. ଗ୍ରାମାଞ୍ଚଳର ଗରିବ ଭୂମିହୀନ ଲୋକେ କିପରି ଜମିର ମାଲିକାନା ପାଇପାରିବେ ସେଥିପାଇଁ ସେମାନଙ୍କୁ ଉପଯୁକ୍ତ ମାର୍ଗ ପ୍ରଦର୍ଶନ ।

3. ଗ୍ରାମାଞ୍ଚଳ ଓ ସହରାଞ୍ଚଳ ଲୋକମାନଙ୍କ ମଧ୍ୟରେ ଶିକ୍ଷା, ସ୍ୱାସ୍ଥ୍ୟ, ଉନ୍ନତ ଜୀବନ ଯାପନରମାନ ସଂପର୍କୀୟ ସଚେତନତା କାର୍ଯ୍ୟକ୍ରମ ।

4. ଅର୍ଥନୈତିକ ସ୍ଥିତିର ଉନ୍ନତି ନିମନ୍ତେ ଧନ୍ଦାମୂଳକ ଶିକ୍ଷା ଓ ପ୍ରଶିକ୍ଷଣ କାର୍ଯ୍ୟକ୍ରମର ଆୟୋଜନ ।

5. ଲୋକଙ୍କର ଆର୍ଥିକ ସ୍ଥିତି ଉନ୍ନତ କରିବା ନିମନ୍ତେ କୃଷି, ପଶୁପାଳନ ଆଦି ପାଇଁ ଋଣ ଦେଉଥିବା ବ୍ୟାଙ୍କ ଓ ଲୋକଙ୍କ

ମଧ୍ୟରେ ସଂପର୍କ ସ୍ଥାପନ ।

## ମୂଲ୍ୟାୟନ :

1. ସ୍ଥାନାନ୍ତର ଗମନର କାରଣଗୁଡ଼ିକ କ'ଣ ?
2. ସ୍ଥାନାନ୍ତର ଯୋଗୁଁ ସହରାଞ୍ଚଳର ବସ୍ତି ବାସିନ୍ଦାମାନେ କି କି ସମସ୍ୟାର ସମ୍ମୁଖୀନ ହୁଅନ୍ତି ?
3. ସେମାନଙ୍କ ଉନ୍ନତି ନିମନ୍ତେ ସରକାରୀ ଓ ଅର୍ଦ୍ଧସରକାରୀ ସଂସ୍ଥାମାନେ କି କି ପଦକ୍ଷେପ ନେଇ ପାରିବେ ?
4. ଝୋପଡ଼ି ବାସିନ୍ଦାମାନଙ୍କର ଜୀବନ ଯାପନ ପ୍ରଣାଳୀରେ କିପରି ଉନ୍ନତି ଅଣାଯିବ ?

***

# ସାକ୍ଷରତାରେ ସମନ୍ୱିତ ଜନସଂଖ୍ୟା
# ଓ
# ବିକାଶ ଶିକ୍ଷା କାର୍ଯ୍ୟକ୍ରମ

ଶ୍ରୀମତୀ ବସନ୍ତ ଲତା ପଟ୍ଟନାୟକ

ମାନବ ସମାଜର ସମସ୍ତ କାର୍ଯ୍ୟ ବା ପ୍ରଚେଷ୍ଟାର ଏକ ଅନ୍ତିମ ଲକ୍ଷ୍ୟ ରହିଛି । ଜୀବନର ବିଭିନ୍ନ ଅବସ୍ଥାରେ ସ୍ଥାୟୀଭାବେ ସନ୍ତୋଷଲାଭ କରିବା ସମସ୍ତ ପ୍ରଚେଷ୍ଟାର ଅନ୍ତିମ ଲକ୍ଷ୍ୟ । ବିଭିନ୍ନ ଅବସ୍ଥାରେ ସ୍ଥାୟୀଭାବେ ସନ୍ତୋଷ ଲାଭ କରିଥିବା ବ୍ୟକ୍ତି ଗୁଣାତ୍ମକ ଜୀବନଯାପନ କରିଥାଏ । ଜୀବନ ଉନ୍ନତ ମାନର ହୁଏ । ଆମ ଦେଶରେ ଜନସାଧାରଣଙ୍କର ଗୁଣାତ୍ମକ ଜୀବନଯାପନ ଲାଗି ବହୁ ଯୋଜନା କାର୍ଯ୍ୟକାରୀ ହେଉଛି । ମାତ୍ର ଲକ୍ଷ୍ୟ କରାଯାଉଛି, ଏହି ସବୁ ଯୋଜନାର ସୁଫଳ ଲୋକେ ପାଇପାରୁ ନାହାଁନ୍ତି । ବହୁସଂଖ୍ୟକ ଲୋକ ଉନ୍ନତ ଜୀବନଯାପନ କରୁନାହାଁନ୍ତି । ଏପରି ବିଫଳତା ପଛରେ ବହୁକାରଣ ରହିଛି ।

ପ୍ରଥମ କାରଣ ହେଲା ବିକାଶ କାର୍ଯ୍ୟକ୍ରମଗୁଡ଼ିକୁ ଗ୍ରହଣ କରିବା ପାଇଁ ଉପଭୋକ୍ତାମାନଙ୍କ ନିକଟରେ ଉପଯୁକ୍ତ ଜ୍ଞାନ, କୌଶଳ ଓ ସଚେତନତାର ଅଭାବ ରହିଛି । ଏସବୁର ବିନିଯୋଗ ଲାଗି ସେମାନଙ୍କଠାରେ ଆବଶ୍ୟକ ଦକ୍ଷତାଥିବା ପ୍ରୟୋଜନ । ମାତ୍ର ଆମ ଦେଶର ବହୁସଂଖ୍ୟକ ଲୋକଙ୍କଠାରେ ଏପରି ଦକ୍ଷତା ନାହିଁ । ଏମାନେ ଲେଖିପଢ଼ି ଜାଣୁନାହାଁନ୍ତି । ନିରକ୍ଷର ରହୁଛନ୍ତି । ୧୯୮୧ରେ ଆମ ଦେଶର ସାକ୍ଷରତା ହାର ଶତକଡ଼ା 43.56 ଥିଲା । ୧୯୯୧ରେ ଏହା ଶତକଡ଼ା 52.11କୁ ବୃଦ୍ଧି ପାଇଥିଲା । ସାକ୍ଷରତା ହାର ବଢ଼ି

ଚାଲିଛି । ଏଥି ସଙ୍ଗେ ସଙ୍ଗେ ନିରକ୍ଷରଙ୍କ ସଂଖ୍ୟା ମଧ୍ୟ ବଢ଼ି ଚାଲିଛି । ଜନସଂଖ୍ୟା ବୃଦ୍ଧି ଏହାର ମୁଖ୍ୟ କାରଣ । ଲକ୍ଷ୍ୟ କରାଯାଉଛି ଏଇମାନେ ଅଧିକ ସଂଖ୍ୟକ ସନ୍ତାନ ଜନ୍ମ ଦେଉଛନ୍ତି । ନିରକ୍ଷରତା ଓ ଜନସଂଖ୍ୟା ବୃଦ୍ଧି ମଧ୍ୟରେ ପାରସ୍ପରିକ ପ୍ରଭାବ ରହିଛି ।

ଦ୍ୱିତୀୟ କାରଣ ହେଲା ତ୍ରୁଟିଯୁକ୍ତ ବିକାଶ କାର୍ଯ୍ୟର ପରିଯୋଜନା । ମାନବ ସମାଜର ତିନୋଟି ଦିଗକୁ ଆଧାର କରି ବିକାଶ କାର୍ଯ୍ୟକ୍ରମଗୁଡ଼ିକ ହେବା ପ୍ରୟୋଜନ । କାର୍ଯ୍ୟକ୍ରମଗୁଡ଼ିକ ଜନସାଧାରଣଙ୍କ ଆବଶ୍ୟକତାକୁ ଭିତ୍ତି କରି ପ୍ରସ୍ତୁତ ହେବ । ଏହି ଆବଶ୍ୟକତା ନିର୍ଭର ଯୋଗ୍ୟ ତଥ୍ୟକୁ ନେଇ ସ୍ଥିର କରାଯିବ । ପୂର୍ବ କାର୍ଯ୍ୟକ୍ରମଗୁଡ଼ିକରୁ ମିଳିଥିବା ଅଭିଜ୍ଞତାକୁ ବିଚାରକୁ ନିଆଯିବ । ମାତ୍ର ଲକ୍ଷ୍ୟ କରାଯାଉଛି ନୂତନ କାର୍ଯ୍ୟକ୍ରମ ପ୍ରସ୍ତୁତ କରିବା ସମୟରେ ଏସବୁ ପ୍ରତି ଉଚିତ ଗୁରୁତ୍ୱ ଦିଆଯାଉନାହିଁ । ତେଣୁ କାର୍ଯ୍ୟକ୍ରମଗୁଡ଼ିକ ଆଶାନୁରୂପ ସଫଳ ହେଉନାହିଁ । ଅଧିକ ସଂଖ୍ୟକ ଉପଭୋକ୍ତା ନିରକ୍ଷର ଥିବାରୁ ଏଥିପ୍ରତି ସଚେତନ ନୁହଁନ୍ତି । କାର୍ଯ୍ୟକ୍ରମ ଯୋଜନାରେ ନିଜର ମତାମତକୁ ସାମିଲ କରିବାରେ ସକ୍ଷମ ହେଉନାହାଁନ୍ତି ।

ନୂତନ ଯୋଜନା ପ୍ରସ୍ତୁତି ସମୟରେ ଏଥିଲାଗି ଆର୍ଥିକ ଅଟକଳ କରାଯାଏ । ମୋଟାମୋଟି ଭାବେ ଏଥିଲାଗି ଆବଶ୍ୟକ ପୁଞ୍ଜି ଓ ଲାଭାଂଶ ହିସାବ କରାଯାଏ । ମାତ୍ର କର୍ମକ୍ଷେତ୍ରର ଅସ୍ୱାସ୍ଥ୍ୟକର ପରିବେଶ ଯୋଗୁଁ କର୍ମଚାରୀମାନେ ରୁଗ୍ଣହେବା, ସେମାନଙ୍କର କାର୍ଯ୍ୟକ୍ଷମତା କମିଯିବା, ସମୟ ଅପଚୟ ହେବା, ମାନବ ସମ୍ବଳ କ୍ଷୟ ହେବା ପ୍ରଭୃତି କ୍ଷୟକ୍ଷତିର କୌଣସି ହିସାବ ରହେ ନାହିଁ ।

ସାଧାରଣ ଲୋକେ ଭାବନ୍ତି ଯେ କୌଣସି ନୂତନ ଯୋଜନାର ଅର୍ଥ କର୍ମସଂସ୍ଥାନରେ ସୁଯୋଗ । ଏହା ମାଧ୍ୟମରେ ଅର୍ଥ ଉପାର୍ଜନ କରି ହେବ । ଅର୍ଥ ଉପାର୍ଜନ କଲେ ସମସ୍ତ ଅସୁବିଧା ଦୂର ହୋଇଯିବ । ମାତ୍ର ଉପାର୍ଜନ କରୁଥିବା ବ୍ୟକ୍ତି ଅର୍ଥକୁ ଉଚିତଭାବେ ବିନିଯୋଗ କରି ନପାରିଲେ ସୁଖଶାନ୍ତିରେ ରହିପାରିବ ନାହିଁ । ନିଜର ସର୍ବନିମ୍ନ ଆବଶ୍ୟକତା ପୂରଣରେ ଅଭାବ ହେବ । ଅସୁସ୍ଥତା

ଯୋଗୁଁ କର୍ମକ୍ଷେତ୍ରରେ ଅପରିହାର୍ଯ୍ୟ ବୋଲି ମନେ ହେବ ନାହିଁ । ଉପଯୁକ୍ତ ସମ୍ମାନ ମିଳିବ ନାହିଁ । ଅର୍ଥ ଥିଲେ ମଧ୍ୟ ଆବଶ୍ୟକ ଜ୍ଞାନ, କୌଶଳ ଓ ଦକ୍ଷତା ବିନା ଏହାର ଉପଯୁକ୍ତ ପ୍ରୟୋଗ ହୋଇପାରିବ ନାହିଁ । ଜୀବନ ଉନ୍ନତମାନର ହେବ ନାହିଁ ।

ତୃତୀୟ ଦିଗଟି ହେଲା ପରିବେଶ ସୁରକ୍ଷା । ଏ ପୃଥିବୀ ଆମେ ସୃଷ୍ଟି କରିନାହୁଁ । ସୁସ୍ଥ ଜୀବନ ଯାପନ ପାଇଁ ଯେତିକି ପ୍ରୟୋଜନ ଆମେ ସେତିକି ସମ୍ପଦ ବ୍ୟବହାର କରିବା । କାରଣ ପୃଥିବୀର ସମ୍ବଳ ସିମିତ । ଏହା ଏକ ନିର୍ଦ୍ଦିଷ୍ଟ ଲୋକଙ୍କୁ ବହନ କରିପାରିବ । ପୃଥିବୀର ଜନସଂଖ୍ୟା ଯେପରି ଦ୍ରୁତଗତିରେ ବଢୁଛି ସେହି ଅନୁପାତରେ ଏହାର ସମ୍ବଳ ସରି ସରି ଆସୁଛି । ଆହୁରି ମଧ୍ୟ ଆମର ନୂଆ ନୂଆ ଉଦ୍ଭାବନରୁ ବାହାରୁଥିବା ବିଷାକ୍ତ ଗ୍ୟାସ୍ ଓ ଆବର୍ଜନା, ପାଣି ପବନକୁ ଦୂଷିତ କରୁଛି । ପରିବେଶ ଦୂଷିତ ହେଉଛି । ନୂତନ କଳକାରଖାନା ଯୋଗୁଁ ଖଣିଜ ସମ୍ପଦ ଶେଷ ହେଉଛି । ବନ ସମ୍ପଦ ନଷ୍ଟ ହେଉଛି । ପୃଥିବୀ ଧ୍ୱସ୍ତ ବିଧ୍ୱସ୍ତ ହେଉଛି । ଯୋଜନା କାଳରେ ଏ ଦିଗଟି ଲୋକଲୋଚନକୁ ଆସୁନାହିଁ । ଜନସାଧାରଣ । ମଧ୍ୟ ଏ ଦିଗରେ ସଚେତନ ନୁହଁନ୍ତି । ନିରକ୍ଷରତା ଏହାର ପ୍ରଧାନ କାରଣ । ବିକାଶ ଶିକ୍ଷା କାର୍ଯ୍ୟକ୍ରମର ଅଭାବ ଯୋଗୁଁ ଏପରି ପରିସ୍ଥିତି ହେଉଛି । ଏହିପରି ନିରକ୍ଷରତା, ଜନସଂଖ୍ୟା ବୃଦ୍ଧି ଓ ବିକାଶ ଯୋଜନା ମଧ୍ୟରେ ପାରସ୍ପରିକ ପ୍ରଭାବ ରହିଛି ।

ଜନସଂଖ୍ୟା ବୃଦ୍ଧି ସମସ୍ତ ମାନବ ସମାଜକୁ ଭୟଭୀତ କରାଇଛି । ଏଥିଲାଗି ବହୁଚିନ୍ତା କରାଯାଉଛି । 1974 ମସିହା ବୁକାରେଷ୍ଟ ଜନସଂଖ୍ୟା ଶିକ୍ଷା ସମ୍ମିଳନୀରେ ଭାରତର ତତ୍‌କାଳୀନ ସ୍ୱାସ୍ଥ୍ୟମନ୍ତ୍ରୀ ଡ଼ଃ. କରଣ ସିଂ କହିଥିଲେ -" Development is the best contraceptive" - ବିକାଶ ହେଉଛି ସବୁଠାରୁ ଶ୍ରେଷ୍ଠ ପ୍ରତିକାର । ଲୋକଙ୍କର ଅର୍ଥନୈତିକ ବିକାଶ ନ ଘଟିଲେ ସେମାନଙ୍କର ଅନ୍ୟାନ୍ୟ ଉନ୍ନତି ମଧ୍ୟ ପଛେଇଯିବ । 1984ରେ ମେକ୍ସିକୋଠାରେ ହୋଇଥିବା ଜନସଂଖ୍ୟା ଶିକ୍ଷା ସମ୍ମିଳନୀରେ ମଧ୍ୟ ଏହି ମତ ପ୍ରକାଶ ପାଇଥିଲା, ଗ୍ରହଣ କରାଯାଇଥିଲା । 1994 ମସିହା କାଇରୋ ସମ୍ମିଳନୀରେ ମଧ୍ୟ ଏହି

ଚିନ୍ତାଧାରାର ପୁନରାବୃତ୍ତି ହେଲା । ଜନସଂଖ୍ୟା ଓ ବିକାଶ ପ୍ରକ୍ରିୟା ମଧ୍ୟରେ ଥିବା ବହୁ ସମ୍ପର୍କ ବିଷୟରେ ଆଲୋଚନା ହେଲା । ସମସ୍ତ ବିକାଶ କାର୍ଯ୍ୟକ୍ରମ ଗୁଡ଼ିକୁ ଜନସଂଖ୍ୟା ବୃଦ୍ଧିକୁ ସୀମିତ କରିବା ଦିଗରେ ନିୟୋଜନ କରିବା ପାଇଁ ସ୍ଥିର କରାଗଲା । ଏଥିପ୍ରତି ଧ୍ୟାନ ଦେଇ ସମନ୍ୱିତ ଜନସଂଖ୍ୟା ଓ ବିକାଶ ଶିକ୍ଷା କାର୍ଯ୍ୟକ୍ରମ ଗ୍ରହଣ କରାଯିବା ସ୍ଥିର ହେଲା ।

ତିନୋଟି ମୁଖ୍ୟ ବିଷୟବସ୍ତୁକୁ ଗୁରୁତ୍ୱ ଦେଇ ଜନସଂଖ୍ୟା ଓ ବିକାଶ ଶିକ୍ଷା କାର୍ଯ୍ୟକ୍ରମ ଗୃହୀତ ହେଲା । ସେଗୁଡ଼ିକ ହେଲା -

(କ) ଜନସଂଖ୍ୟା ଓ ବିକାଶ

(ଖ) ପ୍ରଜନନ ସ୍ୱାସ୍ଥ୍ୟ

(ଗ) ଜନଶିକ୍ଷା ବା ଜନ ଜାଗରଣ

## ସମନ୍ୱିତ ଜନସଂଖ୍ୟା ଓ ବିକାଶ କାର୍ଯ୍ୟକ୍ରମ :

### ଉଦ୍ଦେଶ୍ୟ :

(କ) ଶିଶୁକନ୍ୟାମାନଙ୍କ ପ୍ରତି ଥିବା ବୈଷମ୍ୟ ଦୂରକରିବା ଏବଂ ସେମାନଙ୍କ ସ୍ୱାସ୍ଥ୍ୟ, ପୁଷ୍ଟି ଓ ଶିକ୍ଷାର ସ୍ଥିତିକୁ ବଢ଼ାଇବା ।

(ଖ) ଦମ୍ପତିମାନଙ୍କୁ ସେମାନଙ୍କର ସନ୍ତାନସଂଖ୍ୟା ନିର୍ଦ୍ଧାରଣ ଓ ଲାଳନପାଳନ ତଥା ବିକାଶ ସମ୍ବନ୍ଧୀୟ ଆବଶ୍ୟକତା ପୂରଣ ଲାଗି ଉପଯୁକ୍ତ ସହାୟତା ଦେବା ।

(ଗ) ନାରୀ ପୁରୁଷ ମଧ୍ୟରେ ସମାନତା ଆଣିବା ଓ ମହିଳାମାନଙ୍କୁ ସେମାନଙ୍କ ସାମର୍ଥ୍ୟ ବିଷୟରେ ସଚେତନ କରାଇବା ।

(ଘ) ପୁରୁଷମାନଙ୍କୁ ଦୈହିକ ସମ୍ଭୋଗ ଓ ସନ୍ତାନ ଜନ୍ମ ଦେବାର ଦାୟିତ୍ୱ ସମ୍ବନ୍ଧରେ ଆବଶ୍ୟକ ସହାୟତା ଯୋଗାଇବା ।

## ପରିଯୋଜନା :

କାର୍ଯ୍ୟକ୍ରମଗୁଡିକ ଦୀର୍ଘମିଆଦୀ ସୂତ୍ରରେ କାର୍ଯ୍ୟକାରୀ ହେବ । ଏହାର ପ୍ରଭାବ ଜନସାଧାରଣଙ୍କରଠାରେ ତିଷ୍ଠି ରହି ଆବଶ୍ୟକ କ୍ଷେତ୍ରରେ ବିନିଯୋଗ କରା ହେବ । ବିକାଶ କାର୍ଯ୍ୟକ୍ରମ ଗୁଡ଼ିକ ଜନସଂଖ୍ୟା ବୃଦ୍ଧିକୁ ସୀମିତ କରିବା ଦିଗରେ ସହାୟକ ହେବ । ଜନସାଧାରଣଙ୍କ ଆବଶ୍ୟକତାକୁ ଆଧାର କରି ଏଗୁଡ଼ିକ ଯୋଜନା କରାଯିବ । ଏ ସମ୍ବନ୍ଧୀୟ ତଥ୍ୟମାନ ନିର୍ଭରଯୋଗ୍ୟ ସୂତ୍ରରୁ ଗ୍ରହଣ କରାଯିବା ପୂର୍ବରୁ କାର୍ଯ୍ୟକାରୀ ହେଉଥିବା ବିକାଶ କାର୍ଯ୍ୟକ୍ରମ ଗୁଡ଼ିକର ଅଭିଜ୍ଞତା ଉପରେ ଗୁରୁତ୍ୱ ଦେଇ ସମନ୍ୱିତ ଜନସଂଖ୍ୟା ଓ ବିକାଶ ଶିକ୍ଷା କାର୍ଯ୍ୟକ୍ରମ ସ୍ଥିର କରାଯିବା ଫଳରେ ଏହା ଜନସଂଖ୍ୟା ବୃଦ୍ଧି, ଦାରିଦ୍ର୍ୟ ଦୂରୀକରଣ, ଉତ୍ପାଦନ ପ୍ରକ୍ରିୟା ଓ ଉପଯୋଗ କ୍ରିୟା ଉପରେ ଏକ ସ୍ଥାୟୀ ପ୍ରଭାବ ପକାଇବ ।

## ପ୍ରଜନନ ସ୍ୱାସ୍ଥ୍ୟ :

### ଉଦ୍ଦେଶ୍ୟ :

- ❑ କିଶୋର କିଶୋରୀ ଓ ଦମ୍ପତିମାନଙ୍କୁ ପ୍ରଜନନ ସ୍ୱାସ୍ଥ୍ୟ ସମ୍ବନ୍ଧୀୟ ସମସ୍ତ ସୂଚନା ଯୋଗାଇ ଦେବା ।
- ❑ ସ୍ୱଇଚ୍ଛାରେ ସନ୍ତାନସଂଖ୍ୟା ନିୟନ୍ତ୍ରଣ କରିବା ଦିଗରେ ସହାୟତା ଦେବା ।
- ❑ ଆଶଂକା ବିହୀନ ସମ୍ଭୋଗ ଉପଭୋଗ କରି ଅନାବଶ୍ୟକ ଗର୍ଭଧାରଣ ରୋଧ କରିବା ଦିଗରେ ସହାୟତା ଦେବା ।
- ❑ ପ୍ରଜନନ ସମ୍ପର୍କୀୟ ସମସ୍ୟାମାନ ଦୂର କରିବା ଲାଗି ସହାୟତା ଦେବା ।

## କାର୍ଯ୍ୟକ୍ରମ :

ନିମ୍ନଲିଖିତ ବିଷୟଗୁଡ଼ିକ ଉପରେ ଗୁରୁତ୍ୱ ଦେଇ ପ୍ରଜନନ ସ୍ୱାସ୍ଥ୍ୟ ସେବା କାର୍ଯ୍ୟକ୍ରମ ଗ୍ରହଣ କରାଯିବ ।

- ଗର୍ଭ ନିରୋଧକ ବ୍ୟବସ୍ଥା ।
- ନିରାପଦ ଗର୍ଭପାତ ଲାଗି ସହାୟତା ବ୍ୟବସ୍ଥା ।
- ଜରାୟୁ ସଂକ୍ରମଣ ଓ ଯୌନରୋଗ ସଂକ୍ରମଣକୁ ପ୍ରତିହତ କରିବା ବ୍ୟବସ୍ଥା ।
- ଶିଶୁମୃତ୍ୟୁ ପ୍ରତିରୋଧ ବ୍ୟବସ୍ଥା ।
- ବନ୍ଧ୍ୟାତ୍ୱ ଦୂରୀକରଣ ଓ ପ୍ରଜନନ ସମ୍ପର୍କୀୟ ସମସ୍ୟା ଦୂରୀକରଣ ବ୍ୟବସ୍ଥା ।
- ପାରିବାରିକ କଳହ ତଥା ଯୌନ ନିର୍ଯ୍ୟାତନା ପ୍ରତିରୋଧ ଲାଗି ଗୋଷ୍ଠୀଭିତ୍ତିକ କାର୍ଯ୍ୟକ୍ରମ ବ୍ୟବସ୍ଥା ।
- ସ୍ୱାସ୍ଥ୍ୟ, ଯୌନସମ୍ପର୍କ ଓ ଲିଙ୍ଗ ଭିତ୍ତିକ ଦାୟିତ୍ୱବୋଧ ସମ୍ପର୍କରେ ସୂଚନା, ଶିକ୍ଷା ଓ ପରାମର୍ଶ ବ୍ୟବସ୍ଥା ।

ଏସବୁ କାର୍ଯ୍ୟକ୍ରମ ବିଶେଷ ଭାବରେ କିଶୋରୀ ଓ ମହିଳାମାନଙ୍କର ଆବଶ୍ୟକତା ପୂରଣ ଦିଗରେ ଉଦ୍ଦିଷ୍ଟ ହେବ । ଏମାନଙ୍କ ପାଖେ ସୂଚନା, ପରାମର୍ଶ ଓ ସେବା କିପରି ଏକ ନୂତନ ରୂପରେଖ ନେଇ ପହଞ୍ଚିପାରିବ ସେ ବିଷୟରେ ଆବଶ୍ୟକ ନୂତନ କୌଶଳ ପ୍ରୟୋଗ କରିବା ଏହି କାର୍ଯ୍ୟକ୍ରମର ଅନ୍ୟ ଏକ ଲକ୍ଷ୍ୟ । ପରିବାର କଲ୍ୟାଣ, ଯୌନ ରୋଗ ସଂକ୍ରମଣ ପ୍ରତିରୋଧ, ପ୍ରଜନନ ସେବା, ପାରିବାରିକ ଦାୟିତ୍ୱ ତଥା ଶିଶୁର ଲାଳନପାଳନ ଦିଗରେ ସମଭାଗୀ ହେବା ପାଇଁ ପୁରୁଷମାନଙ୍କୁ ଶିକ୍ଷା ମାଧ୍ୟମରେ ସଚେତନ କରାଇବା ମଧ୍ୟ ଏହାର ଆଉ ଏକ ଲକ୍ଷ୍ୟ । ଏ କାର୍ଯ୍ୟକ୍ରମରେ ମହଳିମାନଙ୍କ ପ୍ରତି ଅଧିକ ସଚେତନ ହେବା ଦିଗରେ

ଧ୍ୟାନ ଦିଆଯାଇଛି । ଆମ ସମାଜରେ ନାରୀ ପୁରୁଷ ମଧ୍ୟରେ ଥିବା ବୈଷମ୍ୟକୁ ଅତିଶୀଘ୍ର ଦୂର କରିବାକୁ ହେବ । ଶିକ୍ଷା କ୍ଷେତ୍ରରେ ମହିଳାମାନଙ୍କୁ ଅଗ୍ରାଧିକାର ମିଳିବ । ବୈଷୟିକ ଜ୍ଞାନ, କୌଶଳ ଓ କର୍ମଯୋଗାଣ କ୍ଷେତ୍ରରେ ଉପଯୁକ୍ତ ସୁଯୋଗ ଦିଆଯିବ । ମହିଳାମାନଙ୍କର ସ୍ୱାସ୍ଥ୍ୟ ଶିଶୁଙ୍କର ଉପଯୁକ୍ତ ଲାଳନପାଳନ ପ୍ରତି ଅଧିକ ଯତ୍ନ କରାଯିବ । ମହିଳାମାନେ ନିଜର ସ୍ୱାସ୍ଥ୍ୟ ଉନ୍ନତି କରି ପାରିବେ । ନିଜର ସାମାଜିକ ସ୍ଥିତି ଉନ୍ନତକରିବେ । ଜୀବନର ବହୁ ସମସ୍ୟାରେ ନିଷ୍ପତ୍ତି ନେବାର କ୍ଷମତା ବୃଦ୍ଧି କରିବା ପ୍ରଭୃତି ବହୁ ଦିଗରେ ବ୍ୟାପକ କାର୍ଯ୍ୟକ୍ରମମାନ ଗ୍ରହଣ କରାଯିବ । ମହିଳାମାନେ କାର୍ଯ୍ୟକ୍ରମମାନ ରୂପାୟନରେ ସମ୍ପୃକ୍ତ ହେବେ ଓ ଏହାକୁ ସମୀକ୍ଷା କରିବାକୁ ସକ୍ଷମ ହେବେ । ଏ ସବୁଲାଗି କିଶୋର ଓ କିଶୋରୀ, ମହିଳା ଓ ପୁରୁଷମାନଙ୍କୁ ସଚେତନ କରାଇବା ଏହି କାର୍ଯ୍ୟକ୍ରମର ଅନ୍ୟ ଏକ ଦିଗ ।

ଏହି ଲକ୍ଷ୍ୟ ନେଇ ଆମ ଦେଶରେ ଜନଶିକ୍ଷା କାର୍ଯ୍ୟକ୍ରମ ମଧ୍ୟ ଗ୍ରହଣ କରାଯାଇଛି । 15ରୁ 35 ବର୍ଷ ବୟସର ସମସ୍ତ ନିରକ୍ଷର ଲୋକଙ୍କ ପାଇଁ ଏହା ଉଦ୍ଦିଷ୍ଟ । ସାକ୍ଷର ଓ ନିରକ୍ଷର ସମସ୍ତେ ଏଥିରେ ଭାଗ ନେଉଛନ୍ତି । ଏଥିଲାଗି ସମସ୍ତଙ୍କ ମନରେ ଏକ ଜାଗରଣ ସୃଷ୍ଟି ହୋଇଛି । ଏହା ଏକ ଗଣ ଆନ୍ଦୋଳନର ରୂପ ନେଇଛି ।

ଏହି ବୟସର ନିରକ୍ଷର ଲୋକଙ୍କ ପାଇଁ ସାକ୍ଷରତା କାର୍ଯ୍ୟକ୍ରମ ଗ୍ରହଣ କରିବାର ଆଉ ଏକ ଲକ୍ଷ୍ୟ ରହିଛି । ଏହି ବୟସର ଲୋକେ ଆମର କର୍ମଶକ୍ତି । ଏମାନଙ୍କର ବାହୁ ଓ ମନ ବଳରେ ଦେଶ ଉନ୍ନତ ହେଉଛି । ମାତ୍ର ଦେଶକୁ ଆହୁରି ଉନ୍ନତ ସ୍ତରକୁ ନେବା ପାଇଁ ଏମାନଙ୍କଠାରେ ଆବଶ୍ୟକ ସଚେତନତାର ଅଭାବ ରହିଛି । ଉପଯୁକ୍ତ ଜ୍ଞାନ ଓ କୌଶଳ ନାହିଁ । ସାକ୍ଷରତା ମାଧ୍ୟମରେ ଏମାନେ ଲେଖିପଢ଼ି ଜାଣିବେ । ନିଜ ପରିବେଶ ପ୍ରତି ସଚେତନ ହେବେ । ପରିବେଶକୁ ବିନିଯୋଗ କରି ଉନ୍ନତ ଜୀବନ ଯାପନରେ ଦକ୍ଷତା ହାସଲ କରିବେ । ତେଣୁ ସାକ୍ଷରତାରେ ଜନସଂଖ୍ୟା ଓ ବିକାଶ ଶିକ୍ଷା କାର୍ଯ୍ୟକ୍ରମକୁ ସନ୍ନିବେଶିତ କରାଯାଇଛି ।

ଏହି କାର୍ଯ୍ୟକ୍ରମରେ ଗୃହୀତ ହୋଇଥିବା କେତେକ ବିଷୟ ହେଲା -

1. ପୁରୁଷ ଓ ନାରୀ ମଧ୍ୟରେ ସମାନତା ଓ ନାରୀ ଶକ୍ତିର ବିକାଶ କରିବା

2. ଶିକ୍ଷାର୍ଥୀମାନଙ୍କର ବିଶେଷ କରି ମହିଳାମାନଙ୍କଠାରେ ଆତ୍ମସମ୍ମାନ ଜାଗ୍ରତ କରାଇ ସେମାନଙ୍କ ସାମାଜିକସ୍ଥିତି ଉନ୍ନତ କରିବା ।

3. ଉନ୍ନତ ଜୀବନ ଲାଗି ସ୍ଥାୟୀ ବିକାଶ କାର୍ଯ୍ୟକ୍ରମ ।

4. କିଶୋର, କିଶୋରୀ ଓ ଦମ୍ପତିମାନଙ୍କ ଲାଗି ପ୍ରଜନନ ସ୍ୱାସ୍ଥ୍ୟ ଓ ଶିକ୍ଷା ବ୍ୟବସ୍ଥା ।

5. ପରିବର୍ତ୍ତିତ ଜୀବନଧାରା ଅନୁଯାୟୀ ପାରିବାରିକ ଶିକ୍ଷା ବ୍ୟବସ୍ଥା ।

6. ବିକାଶ ଧାରାକୁ ସ୍ଥାୟୀ କରିବା ଲାଗି ଆବଶ୍ୟକ ପନ୍ଥା ।

7. ସହରୀକରଣ ଓ ବଣ୍ଟନ ।

ଏ ସମସ୍ତ ବିଷୟ ସମନ୍ୱିତ ଜନସଂଖ୍ୟା ଓ ବିକାଶଶିକ୍ଷା କାର୍ଯ୍ୟକ୍ରମ ପରିସର-ଭୁକ୍ତ । ଏହିପରି ଭାବେ ସାକ୍ଷରତାରେ ସମନ୍ୱିତ ଜନସଂଖ୍ୟା ଓ ବିକାଶ ଶିକ୍ଷା କାର୍ଯ୍ୟକ୍ରମକୁ ସାମିଲ କରାଯାଉଛି । ଏହାଦ୍ୱାରା ଦେଶରୁ ନିରକ୍ଷରତା ଓ ଜନସଂଖ୍ୟା ବୃଦ୍ଧିକୁ ପ୍ରତିରୋଧ କରିହେବ ।

***

# ଭୁବନେଶ୍ୱର ସମ୍ମିଳନୀ ଓ ଏହାର ସୁପାରିଶ

ଶ୍ରୀ ମିତ୍ରଭାନୁ ପ୍ରଧାନ

ବର୍ତ୍ତମାନ ଆମ ଦେଶର ପ୍ରାୟ 430ଟି ଜିଲ୍ଲାରେ ସଂପୂର୍ଣ୍ଣ ସାକ୍ଷରତା ଅଭିଯାନ ଦ୍ୱାରା ଏକ କୋଟି 50ଲକ୍ଷ ଅଣସାକ୍ଷର (୨ରୁ 35ବର୍ଷ ବୟସ) ଉପକୃତ ହେଲେଣି । ଏମାନଙ୍କ ମଧ୍ୟରୁ ଶତକଡ଼ା 62ଭାଗ ହେଉଛନ୍ତି ମହିଳା । ଏମାନଙ୍କୁ ସାକ୍ଷର କରିବା ନିମନ୍ତେ ଦଶ ନିୟୁତରୁ ଅଧିକ ସ୍ୱେଚ୍ଛାସେବୀଙ୍କର ମହତ୍ ଅବଦାନ ରହିଛି । ଏମାନଙ୍କ ମଧ୍ୟରୁ ଶତକଡ଼ା 60ଭାଗ ହେଉଛନ୍ତି ମହିଳା ଓ କିଶୋରୀ । ଦେଖାଯାଉଛି ସାକ୍ଷରତା କାର୍ଯ୍ୟକ୍ରମରେ ଭାଗ ନେଇ ନବସାକ୍ଷରମାନେ ସଚେତନ ହେବା ସହିତ ସେମାନଙ୍କର ଆତ୍ମ ବିଶ୍ୱାସ ଫେରିପାଇଛନ୍ତି ।

ନବମ ପଞ୍ଚବାର୍ଷିକ ଯୋଜନାରେ ସାକ୍ଷରତା କାର୍ଯ୍ୟକ୍ରମ ଆରମ୍ଭ ହୋଇଥିବା ଅଧିକାଂଶ ଜିଲ୍ଲାରେ ସାକ୍ଷରତା ପରବର୍ତ୍ତୀ ଓ ନିରନ୍ତର ଶିକ୍ଷା କାର୍ଯ୍ୟକ୍ରମ ଚାଲୁ ହେବ । ନବସାକ୍ଷରମାନେ ନିରନ୍ତର ଶିକ୍ଷା କେନ୍ଦ୍ରମାନଙ୍କ ଦ୍ୱାରା ବହୁଭାବରେ ଉପକୃତ ହେବେ । ଏଣୁ ଏହି ସମୟରେ ନିରନ୍ତର ଶିକ୍ଷା କେନ୍ଦ୍ର ମାଧ୍ୟମରେ ଜନସଂଖ୍ୟା ଶିକ୍ଷାର ବିଭିନ୍ନ ସଂଦେଶ ନବସାକ୍ଷରମାନଙ୍କ ପାଖରେ ପହଞ୍ଚି ପାରିବ ।

1୨୨8 ଅଗଷ୍ଟମାସ 11ରୁ 13 ତାରିଖ ପର୍ଯ୍ୟନ୍ତ ଭୁବନେଶ୍ୱରଠାରେ ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା ଏବଂ ପ୍ରୌଢ଼ଶିକ୍ଷା ନିର୍ଦ୍ଦେଶାଳୟ, ଦିଲ୍ଲୀଙ୍କ

ମିଳିତ ଉଦ୍ୟମରେ ଦେଶର ସମସ୍ତ ସାଧନ କେନ୍ଦ୍ରର ନିର୍ଦ୍ଦେଶକ ଏବଂ ଜନସଂଖ୍ୟା ବିଭାଗର ସଂଯୋଜକମାନଙ୍କର ଏକ ତାଲିମ୍ କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇଯାଇଛି ।

ଏଥିରେ ନିମ୍ନମତେ ସୁପାରିଶ କରାଯାଇଥିଲା -

☛ ତୃତୀୟ ପର୍ଯ୍ୟାୟ କାର୍ଯ୍ୟକ୍ରମର ନୂତନ ଦିଗଗୁଡ଼ିକ ସମ୍ବନ୍ଧରେ ତାଲିମ୍ ଉପକରଣର ଆବଶ୍ୟକତା ।

☛ ଜୀବନର ଗୁଣାତ୍ମକ ବିକାଶ ହିଁ ବିକାଶ ଶିକ୍ଷାର ଲକ୍ଷ୍ୟ ।

☛ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଗୁଡ଼ିକର ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ।

☛ ନବସାକ୍ଷରମାନଙ୍କ ନିମନ୍ତେ ଅଧିକ ପଠନ ସାମଗ୍ରୀ ।

☛ ସ୍ୱେଚ୍ଛାସେବୀମାନଙ୍କୁ ଉତ୍ସାହିତ କରିବା ପାଇଁ ଦୂରଦର୍ଶନ ଏବଂ ଆକାଶବାଣୀ ଗୁଡ଼ିକର ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ।

☛ ନିଜର ଅଧିକାର ଏବଂ କର୍ତ୍ତବ୍ୟ ସମ୍ବନ୍ଧରେ ସଚେତନ ହେବା ଦ୍ୱାରା ନାଗରିକର ଉନ୍ନତି ସମ୍ଭବ ।

***